# ଭୂମିକା

ଏଥିରେ ଯେଉଁ କେତୋଟି ଗୀତ ସନ୍ନିବେଶିତ ହୋଇଅଛି ତାହା ବିଭିନ୍ନ ସମୟରେ ଚିତ୍ତର ବିଭିନ୍ନ ଅବସ୍ଥାରେ ଲେଖା ହୋଇଅଛି । ଉପାସନା ବେଳେ ଏବଂ ଅନ୍ୟ ସମୟରେ ମଧ୍ୟ ଏ ଗୁଡ଼ିକ ଗାଇବାରେ କେହି କୁଣ୍ଠାବୋଧ କରିବେ ନାହିଁ । ଏ ସବୁ କାହିଁକି ଲେଖିଲି ତାହାର କାରଣ ବିଶଦ ଭାବରେ ଦର୍ଶାଇବା ଦରକାର ମନେ କରେ ନା କିନ୍ତୁ ଏତିକି କହିବାକୁ ଚାହେଁ ଯେ, ହୃଦୟର ଆବେଗରେ ଏ ଗୁଡ଼ିକ ଲେଖି ପକାଇ ଅଛି । ଅନେକ ଦିନ ପରେ କେତେକ ବନ୍ଧୁମାନଙ୍କ ଅନୁରୋଧରେ ଛପାଇବାରେ ସାହସୀ ହେଲି—ଏହା ଗାୟକ ଏବଂ ଗାୟିକାମାନଙ୍କ ଦ୍ୱାରା ଆଦୃତ ହେଲେ, ମୋର ସେହି ହୃଦୟର ଆବେଗ ସାର୍ଥକ ହେଲା ବୋଲି ମନେ କରିବି ।

ଏହାର ପାଣ୍ଡୁଲିପି ପାଠ କରି ମୋର ସହୃଦୟ ବନ୍ଧୁ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ମହୋଦୟ ଉତ୍ସାହିତ କରିଥିବାରୁ, ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଏହି ଗୀତମାଳା ପ୍ରଭୁଙ୍କର ପବିତ୍ର ଚରଣରେ ଭକ୍ତି ପୁଷ୍ପାଞ୍ଜଳୀରୂପେ ଅର୍ପଣ କରି ତାଙ୍କ ମହା ନାମର ବନ୍ଦନା କରୁଅଛି ।

୧୫ । ୧୧ । ୪୯ }
କଟକ

ଲାଲମୋହନ ପଟ୍ଟନାୟକ

# ସୂଚୀ

| ବିଷୟ | ପୃଷ୍ଠା |
|---|---|

# ପ୍ରଭାତ ସ୍ତୁତି

ରାଗ—ପ୍ରଭାତୀ

(ଜୟ ପ୍ରଭୁ ଯୀଶୁ ଜୟ ପ୍ରଭୁ ଯୀଶୁ—ବୃନ୍ଦେ)

ଜୟ ପ୍ରେମନାଥ ଜୟ ପ୍ରେମନାଥ
ଜୟ ଜୟ ଯୀଶୁ ଦୀନନାଥ ହେ,
ପ୍ରେମେ ନିବେଶିତ, ପ୍ରେମେ ବିଳସିତ,
ପ୍ରେମରେ ମୋହିତ ନିରତ ହେ । ଧ୍ରୁବ ।

ପ୍ରେମର ଅମୃତ ଶତରେ ସନ୍ତତ
(ନାଥ) ସେ ପ୍ରେମ ଜଗତେ ଅଦ୍ଭୁତ ହେ,
ପାପର ମୋଚନେ, ଆତ୍ମବଳଦାନେ,
(ମୋର) ନାଶିଲ ବନ୍ଧନେ ଦୁରିତ ହେ । ୧ ।

ବିଶ୍ୱର ପାପ ବିଶ୍ୱର ତାପ
ବିଶ୍ୱର ଶାପ ହର ନିତ୍ୟ ହେ
ଭକତ ବିଶ୍ୱାସ ଭକତ ନିଶ୍ୱାସ
(ତୁମେ) ଭକତ ଚିର ଅନୁଗତ ହେ । ୨ ।

ପତିତ—ତ୍ରାଣ ପତିତ-ତ୍ରାଣ
ପତିତ-ପ୍ରାଣ କର ପୂତ ହେ
ମର୍ତ୍ତ୍ୟେ ଅବତରି, ମୃତ୍ୟୁ ଜୟ କରି,
(ପ୍ରଭୁ) ମରତେ ହୋଇଲ ପୂଜିତ ହେ । ୩ ।

( ଅରଢ ଅନନ୍ଦ ସିନ୍ଧୁ—ବୃନ୍ଦେ )

ଆନନ୍ଦ-ଆନନ୍ଦ ଆହେ ବ୍ରହ୍ମାନନ୍ଦ
କାମ ଯେଣୁ ପ୍ରେମାନନ୍ଦ,
ହୃଦୟର ଗନ୍ଧ ପ୍ରେମ—ମକରନ୍ଦ
ଝରେ ପାଦୁଁ ନୋହୁ ବନ୍ଦ । ଘୋଷା ।
ପ୍ରେମର ଝରଣା ଫୁଟି ପ୍ରାଣେ ନାନା
ବନ୍ଧନମାନ ଭାଙ୍ଗି ବନ୍ଧ
ଆରତେ କାତରେ ଦେବ ନିଜ ହାତେ
ପିଇବ ସେ ମକରନ୍ଦ । ୧ ।
ପାନେ ହୋଇ ମତ୍ତ ପାସୋରି ଜଗତ
ଛେଦବ ପାପର ଫାନ୍ଦ
ଗଦଗଦ ସ୍ୱରେ ଗାଇବ ମଧରେ
ବାନ୍ଧି ତବ ନାମେ ଛାନ୍ଦ । ୨ ।



( ରଘୁପତି ରାଘବ ରାଜାରାମ—ବୃନ୍ଦେ )

ଭକତ-ମୁକତ-ଗୁରୁଧାମ
ଜଗତ-ଜୀବନ-ପ୍ରାଣାରାମ ।
ପାପତାପ-ବିନାଶନ
ଜଗତ-ପାବନ ପ୍ରାଣାରାମ ।
ପରଂଜ୍ୟୋତି ନିରଞ୍ଜନ
ଜଗତଜୀବନ ପ୍ରାଣାରାମ ।
ପ୍ରେମରାଜ୍ୟେ ଅନୁପମ
ଜଗତଜୀବନ ପ୍ରାଣାରାମ ।

ଶାନ୍ତିଦାତା ସନାତନ
ଜଗତଜୀବନ ପ୍ରାଣାରାମ,
ଦୟା-କ୍ଷମା-ନିକେତନ
ଜଗତଜୀବନ ପ୍ରାଣାରାମ ।
ଦୀନ-ଜନ-ଅଭିରାମ
ଜଗତଜୀବନ ପ୍ରାଣାରାମ,
ନିରତ ମଙ୍ଗଳ କର ଦାନ
ଧନ୍ୟ ଧନ୍ୟ ସୁଧାନାମ ।



ରାଗ—ମୂଖାରି ତାଳ—ଅଠ
(ତୈଲଙ୍ଗ-ପାରସୂଦ୍ଧା—ବୃତ୍ତେ)

ନିରମଳ ନିରମଳ ନିରମଳ ଦେବତା
ସୁରନର-ପ୍ରଶଂସିତ ସୃଷ୍ଟି କରତା । ଧ୍ରୁବ ।
ଶକ୍ତିମୟ ବିଶ୍ୱପିତା ଜ୍ଞାନଜ୍ଞାନ-ପ୍ରଦାତା
ବଳବୁଦ୍ଧି-ବିଶାରଦ ନ୍ୟାୟ-ପ୍ରଣେତା । ୧ ।
ପ୍ରେମମୟ-ଅବତାର ଅଦ୍ୱିତୀୟ କୁମର,
କରୁଣା-କ୍ଷୀର-ସାଗର ବିଶ୍ୱନିୟନ୍ତା । ୨ ।
କୃପାମୟ ଯୁବା'ମେଷ' କ୍ରୁଶାର୍ପିତ ନରେଶ,
ପତିତଜନ ବାନ୍ଧବ, ପାପ-ହରତା । ୩ ।
ଜ୍ୟୋତିର୍ମୟ, ପବିତ୍ରାତ୍ମା, ସାରତତ୍ତ୍ୱ ବୋଧାତ୍ମା,
ଅନୁପମ-ବରଦାତା, ନୀତି—ବିଧାତା । ୪ ।
ସୁଧାମୟ ରତ୍ନାକର ସତ୍ୟ ଶିବ ସୁନ୍ଦର
କରେ ଭିକ୍ଷା, ଦିଅ ନାଥ ! ଭକ୍ତି ମମତା ।୫।



ରାଗ—ଧନାଶ୍ରୀ                    ତାଳ—ମିଶ୍ରିରୂପ

(ମୋହନ ସୁତ ଚନ୍ଦ୍ରା ପଣ୍ଡାଙ୍କ ମା—ବୃନ୍ଦେ)

ପରମ-ଜ୍ୟୋତି କ୍ଷିତି ଜନମିଲା ମା—ପଦ
ନର ଭୟ ନାଶି ମହିମା ବଖାଣି
ମହୀରୁ ପାପ ତାପ ହରିଲା ମା— । ୧ ।
ଜୀବର ଜୀବନ ଜଗତ-ପାବନ
ଭୀତ ଚିତରୁ ଭିନ୍ନ କରିଲା ମା— । ୨ ।
ପୁଲକରେ ମାତି ମନୁଁ ନାଶି ଭ୍ରାନ୍ତି
ପ୍ରେମ-ପୀୟୂଷ ରସ ସିଞ୍ଚିଲା ମା— । ୩ ।
ମଉନେ ଚଳାଏ ମନ୍ଦ ମନ୍ଦ ହସି
ମୋହନ-ମନ୍ତ୍ରେ ମୋତେ ମୋହିଲା ମା— । ୪ ।
ଯେତେ ଯେତେ ପାପ ଯିବ ହୋଇ ଲୋପ
ଭଜିଲେ ଜ୍ୟୋତି ନାହିଁ ନୋହିଲା ମା— । ୫ ।



ରାଗ - ମଦନା ତାଳ—ରୂପକ

ଗୁଣନିଧି । ଅଛି କିଏ ତୁମ୍ଭ ସମାନ ହେ
ଖୋଜି ପାଉନାହିଁ କାହିଁ ସରି ସମାନ ହେ । ପଦ ।
ଜନ୍ମ କଲି ଦୁଃଖ                    ସହିଲ ଅସଂଖ୍ୟ
ଆଦରଣ ମହୀତଳେ ହେଲା ବଦ୍ୟମାନ । ୧ ।
ଦେଲ ପ୍ରାଣ ବଳି                    ପରହିତେ ଭାଳି
କଲ ନାରଖାର ଅରି-ତୁଚ୍ଛା ଅଭିମାନ । ୨ ।

କାଶି ମୃତ୍ୟୁବଳ ଭଜିଲ ଅମର
ତ୍ରାତା ନାମ କଲ ସାର, ନାହିଁ ଉପମାନ । ୩ ।
ହେଳ ବରାବର ଗୁଣ ପାରାବାର
ମର୍ତ୍ତି ପାଦେ ଶତ୍ରୁ ମୋର ଲଭୁ ସନମାନ



ରାଗ—ଖାମ୍ବୋଜୀ ମିଶ୍ର—ତାଳ—ରୂପକ

ଜୟ ଜୟ ମୃତ୍ୟୁଞ୍ଜୟ
ଜଗଜୀବନ ଅଭୟ
ଜରା ରୋଗ ମୃତ୍ୟୁଭୟ
ଜଗତରୁ କଲ କ୍ଷୟ—ଧ୍ରୁବ ।

ଜଗଜ୍ଜ୍ୟୋତି ପରଂବ୍ରହ୍ମ
ଜଗତେ ଲଭି ଜନମ
ଜ୍ୟୋତି ତାଙ୍କ ଅନୁପମ
ଜାଳି ଦେଲ ତାପତ୍ରୟ । ୧ ।

ଜଞ୍ଜାଳରେ ନଡ ସର
ଜଳଜଳ ନେତ୍ରୁ ଧାର
କୋଳରେ ଧରି ଅଙ୍ଗେ ଜର
ଜୀବନ କରେ ଅଥୟ । ୨ ।

ଜଣି ମୋତେ ଦଅ ନାହିଁ
'ଜଣିଆ ପରମ' କହ
କଣାଣ ଢରେ ତୁହାଇ
ଜୀବେ ଦଅ ଭକ୍ତି ଜୟ । ୩ ।

ରାଗ—ଖମ୍ବାଜ ତାଳ—ଏକ

( ତୋମାର ଗେହେ ପାଳିଛ ସ୍ନେହେ ତୁମି ଧନ୍ୟ—ସୁରେ )

ଜଗତ-ପ୍ରାଣ ଜଗତ-ତ୍ରାଣ
ତୁମ୍ଭେ ଧନ୍ୟ ଧନ୍ୟ ହେ !
ବିଶ୍ୱ ଭୁବନ ତୁମ୍ଭର ଦାନ
ତୁମ୍ଭେ ଧନ୍ୟ ଧନ୍ୟ ହେ । ଧ୍ରୁବ ।
ସୂର୍ଯ୍ୟ,ଚନ୍ଦ୍ର,ତାରା, ମେରୁ, ଜଳ, ଧରା, ବାୟୁ, ଅଗ୍ନି, ଖରା,
ପଶୁ ପକ୍ଷୀ ସାର, ଫଳ, ପୁଷ୍ପ ଶୋଭା, ବହୁଲ ଅପରା
ତୁମ୍ଭେ ଧନ୍ୟ ଧନ୍ୟ ହେ । ୧ ।
ମାନବ ପରାଣ, ଜୀବନ ମରଣ,
କାଳ, ତତ୍ତ୍ୱ, ଧର୍ମ, ସତ୍ୟ, ଜ୍ଞାନ, ପ୍ରେମ,
ସକଳ ବିଧାନ, ତୁମ୍ଭର ତିଆଣ
ତୁମ୍ଭେ ଧନ୍ୟ ଧନ୍ୟ ହେ । ୨।
ଜନକ ଜନନୀ ସୋଦର ଭଗିନୀ,
ପତି ସଙ୍ଗେ ପତ୍ନୀ, ପୁତ୍ର କନ୍ୟା ପୁଣି
ଜ୍ଞାତି-ବନ୍ଧୁ-ଶ୍ରେଣୀ, ସ୍ଥାପିଲ ବିଧାନି,
ତୁମ୍ଭେ ଧନ୍ୟ ଧନ୍ୟ ହେ । ୩ ।
ତୁମ୍ଭ ମହାପ୍ରେମ, ବୋଧର ଅଗମ୍ୟ,
ତୁମ୍ଭ ଗୁଣଗ୍ରାମ, ମର୍ତ୍ତ୍ୟେ ଅନୁପମ,
ଯେଉଁ ହେ ଜଣାଣ, ଦିଅ ଭକ୍ତି ପ୍ରେମ
ତୁମ୍ଭେ ଧନ୍ୟ ଧନ୍ୟ ହେ । ୪ ।



—ooXoo—

ରାଗ — ଶୋକ କାମୋଦୀ

ଜୟ ହେ ଜଗତ-ଜୀବନ — ପତ ।
ପତିତ-ଜନ-ମନ-ମୋହନ ପାପୀ-ପାପ-ତାପବିନାଶନ ।୧।
ଭକ୍ତ-ଜୀବନ-ମାନସାଞ୍ଜନ ଭବ-ଭୀତ-ଭ୍ରାନ୍ତିପୁଭଞ୍ଜନ ।୨।
ସରଗଧନ ଶାନ୍ତିସଦନ ସୁଖ-ସମ୍ପଦ ପ୍ରୀତିବର୍ଦ୍ଧନ ।୩।
ଜଗତତାରଣ, ତୁମ୍ଭ ଶାସନ ବିନକୁ ଦିନ ବଢୁ ବହନ ।୪।



ରାଗ—ମୁଲତାନ, ତାଳ—କାଓ୍ୱାଲି

( ଅଜ୍ଞ ମନ ପ୍ରାନ୍ ଖୁଲେ ବଲ—ବୃନ୍ଦେ )

ନର ନାରୀ ଗଣ ହୋଇ ଏକମନ ଗାଅ ଯୀଶୁଗାନ
ପ୍ରେମେ ଭୁଲି ମାନ୍ ଅଭିମାନ ଭଜ ଯୀଶୁ ନାମ । ଘୋଷା ।
ସେ ତ ଗରବଗଞ୍ଜନ ଭାବଗ୍ରାହୀ ହୃଦରଞ୍ଜନ
ଭବେ ପାପତାପ ଶାପ ନିବାରଣ ଭକ୍ତ-ପରାଣ-ଧନ । ୧ ।
ସେ ପ୍ରେମର ନିଶାଣ ନିରନ୍ତର ରଞ୍ଜାଇ ଗଗନ
ଉଡେ ଝଣି ମନ ନନ୍ଦି ପୁଣି ସୁର ଶାନ୍ତିଧାମ । ୨ ।
ଭେଦାଭେଦ-ଜ୍ଞାନ ଜୀବନେ ତରଜି ତହନ
ସର୍ବେ ହୋଇ ଏକମନ ସେବ ସେହି ଚରଣ । ୩ ।



ରାଗ—ବେହାଗ ମିଶ୍ର, ତାଳ—କାଓ୍ୱାଲି

( ଅହା କ ସୁନ୍ଦର ତବ ପ୍ରେମ ଦରଶ—ବୃନ୍ଦେ )

ଆହା କ ସୁନ୍ଦର ମୁଖ ନିତ୍ୟନୂତନ
ଯୀଶୁ ମୋର ଗଳାହାର ପ୍ରାଣାରାମ ଶାନ୍ତିଧାମ । ଘୋଷା ।

ନୟନ-ଅଞ୍ଜନ ହୃଦୟ-ଚନ୍ଦନ
ତାଙ୍କ ଲାଗି ସିନା ରହିଛି ଜୀବନ
ଯୀଶୁ ମୋର ପ୍ରାଣାଧାର ପ୍ରାଣାରାମ ଶାନ୍ତିଧାମ । ୧ ।
ଦେଖିଲେ ସେହି ପୁଣ ଲୁଚଇ ଆନନ
ଦିଶଇ ଚୌଦିଗ ଅନ୍ଧାର ସମାନ
ଯୀଶୁ ମୋର ଚିତ୍ତଚୋର ପ୍ରାଣାରାମ ଶାନ୍ତିଧାମ । ୨ ।
ସେହି ମୁଖ-ସୋମ ରୂପେ ଅନୁପମ
ଚାହିଁଲେ ହରଇ କୋଟି ପାପତମ
ଯୀଶୁ ମୋର ପାପହର ପ୍ରାଣାରାମ ଶାନ୍ତିଧାମ । ୩ ।
ନିରେଖି ତରୁଣ ବଦନ କରୁଣ
ଜଗତେ ମୋହର ବୀତ ଯାଉ ଦିନ
ଯୀଶୁ ମୋର ସୁଖସାର ପ୍ରାଣାରାମ ଶାନ୍ତିଧାମ । ୪ ।



( ମୋ ଯୀଶୁ ବିଜନ ବିନା— ବୃତ୍ତେ )

ଯୀଶୁ ନାମ ଯୀଶୁ ଧ୍ୟାନ
ମନୁଁ ହରେ କ୍ଷଣେ ଯାତନ । ଧ୍ରୁବ ।
ସେହି ସତ୍ୟ ସନାତନ ଶିବ ସୁନ୍ଦର ନବୀନ
ମହୀମଣ୍ଡଳରେ ଗତ ଜୀବନ । ୧ ।
ଦୟା-କ୍ଷମା-ନିକେତନ ଦରିଦ୍ରର ଗଣ୍ଠିଧନ
ମୋହେ ମନ ଲେପି ପ୍ରୀତି-ଚନ୍ଦନ । ୨ ।
ଭକ୍ତ-ମାନସ-ସୁମନ ଭଗାରି-ଦର୍ପ-ଦଳନ
ମର୍ତ୍ତ୍ୟେ ସେହି ଏକା ଶାନ୍ତିସଦନ । ୩ ।
ମୃତ୍ୟୁଞ୍ଜୟ ନିରଞ୍ଜନ ମିତ୍ରବର ଅନୁପମ
ମାନି ତାଙ୍କୁ ନିତ ଯାପ ଜୀବନ । ୪ ।

ରାଗ—ବିଲାହରି, ଅଡ଼ତାଳି

( ଜୀବଲେ ଭଗବାନ ଦରଶନ—ବୃତେନ୍ତ )

ଯୀଶୁଙ୍କୁ ନିରନ୍ତର ପ୍ରାଣେ ପୂଜିବ । ଧ୍ରୁବ ।
ବିଶ୍ୱବନ୍ଦନ ସତ୍ୟ ସନାତନ ଜଗତେ ମୋହନ ରୂପ ଧରିଣ,
ଗତର ବିଧାନ ସାଧିଲେ ବନ୍ଧନ ଏବେ କିପରି ତାଙ୍କୁ ତେଜିବ ।
ରୂପସାଗର ସର୍ବଗୁଣାକର ସରସ ଅଧର ବାଣୀ ମଧୁର,
କରୁଣା-ଆଧାର ଶାନ୍ତି-ପାରାବାର ମନ୍ତ୍ରୁ କି କରି କ୍ଷଣେ ଭୁଲିବ ।
ସେବା ଯାହାର ଥିଲା ଜୀବନର ଏକଇ ମାତର ମୂଳ ମନ୍ତ୍ରର
ସେ ଗୁରୁ ମନ୍ତ୍ରର ଜପି ନିରନ୍ତର ଭବେ ଜୀବନ ଶୁଭେ କାଟିବ
ଜ୍ଞାନଦାୟକ ମୁକତିକାରକ ଭକତିଗ୍ରାହକ ପ୍ରେମଦାୟକ,
ସନ୍ତାପହାରକ ଭୂବନପାଳକ ପାଦେ ଶରଣ ନିତି ପଶିବ ।

---

(ଅହେ ଦୀନବନ୍ଧୁ ! ଫେଡ଼ କଷ୍ଟ ମୋହର—ବୃତ୍ତେ)

ଆହେ କୃପାସିନ୍ଧୁ ! କର କୃପା ଅଧୀନେ । ଧ୍ରୁବ ।
ଶତ ଶତ ଭକ୍ତଗଣେ ପଥ ଭୁଲି ଭବବନେ
ଫେରୁଛନ୍ତି ସତ୍ୟପଥେ ତବ କଲ୍ୟାଣେ । ୧ ।
ନଗଣ୍ୟ ଦାସାନୁଦାସେ ପଡ଼ି ରୋଗଯନ୍ତ୍ରା-ନାଶେ
ଯାଉଛନ୍ତି ତରି କ୍ଷଣେ ଡାକି ନିଦାନେ । ୨ ।
କୋଟି କୋଟି ନରନାରୀ ଅଜ୍ଞାନ-ଅନ୍ଧାରେ ଘୂରି
ଲଭି ଜ୍ୟୋତି ଗାଉଛନ୍ତି ସ୍ତୁତି ସୁତାନେ । ୩ ।
ଅଗଣିତ ପାପୀ ଜନେ ରହି ପାପ ପ୍ରଲୋଭନେ
ପାଉଛନ୍ତି ପରିତ୍ରାଣ କେତେ ଜୀବନେ । ୪ ।

ବୁଡ଼ି ସନ୍ତାପ ସାଗରେ ଡାକେଁ ବ୍ୟାକୁଳ ଅନ୍ତରେ
ଦେଇ କୃପା-ନାବ ପାର କର ବହନେ । ୫ ।



## କୀର୍ତ୍ତନ

(ତୁମି ଅଧମ ପତିତ ଜନେ—ସୁରେ)

ମୋ'ର ଜୀବନ-ସଙ୍ଗୀତ ନିତ ଜାଗେ ପ୍ରାଣପଥେ
(ଶୁଦ୍ଧ) ବାରେ ବାରେ ମନା କରୁ ଗମିବାକୁ ଅଣପଥେ ।
ଏ ସଂସାର ଜାଲେ ଗଲେ ପଡ଼ି
ତୋଳି ନେଉ ହାତେ କ୍ଷଣେ ଜାଲ ଯାଏ ଛିଡ଼ି
(ସେଦ୍ଧ) ମହାନନ୍ଦେ ଭକ୍ତି ଭରେ କରେ ସ୍ତୁତି ଅବିରତେ ।୧।
ଯେବେ ସେ ଅକୁଳାନ କଲେ
ମଡ଼ି ପେଷି ହୋଇ ଉଠକ ଜୀବନ ସକଳେ
(ନାଥ) ଫେଡ଼ୁଥାଉ ଦୁଃଖ ତାପ ଦେଇ ଶାନ୍ତି କେତେ କେତେ
ପାପେ ପ୍ରାଣ ହେଲେ ଜରଜର
ପ୍ରେମ-ବଜ୍ର ଦେଇ ତାରେ ନାଶୁ ଖରତର
(ତାର) ପବନ ହିଲ୍ଲୋଳେ ନାଚେ ତନୁ ପ୍ରାଣ ହରଷିତେ ।୩।
ବିଳାସରେ କେହି ଗଲେ ଭୁଲି
ତା ଅନ୍ତରେ ଅନୁଯୋଗ କରୁ କେତେ ଭାଳି
(ସେଦ୍ଧ) ଅନୁତାପେ ଅନୁରାଗେ ଅନୁସରେ ପୁଣ୍ୟପଥେ ।୪।





ରାଗ—ବଲହାରୀ ତାଳ—ଢିମାତାଳା

ଜୟ ମୃତ୍ୟୁଞ୍ଜୟ ଯୀଶୁ ଜୟ—ପଦ ।

ଜୟ ଜୟ ଚରପୂଜ୍ୟ ପରମ-ପରମାତ୍ମଜ
ବାଜ ନାମେ ରାଜ୍ୟ ରାଜ୍ୟ
ବଳୟ-ବାଜଣା ବାଜ । ୧ ।

ପାପ ବିଷ ବ୍ୟାଧି ତେଜ ଟାଳ, ରଖ ମୋତେ ଆଜ
ଯାଉ କ୍ଷଣେ ତୋଳ ଶେଯ
ଶୟତାନ ପାଇ ଲାଜ । ୨ ।

ଷଡ ରିପୁ ବପୁ ସାଜ ହେଉ ସହଜେ ଅସଜ
ଯାଉଁ ଭାଙ୍ଗ ରିପୁରାଜ
ମହାବଳୀୟାର-ଭୂଜ । ୩ ।

ବରଜ ବିଷମ ବ୍ୟାଜ ନରେଶ ମୁଖସରୋଜ
ଝରତେ ପରାଣେ ପୂଜ
ଲଳିତ-ଚରଣ-ରଜ । ୪ ।

---

ରାଗ—ପରଜ ତାଳ—ମିଶ୍ରି ରୂପ

ମୋ ତ୍ରାଣକର୍ତ୍ତାଙ୍କ ପରି ଜଗତେ କେ ହେବ ସରି ? । ପଦ ।

ସନ୍ତାପ-ତାପ-ପାସୋରା ପଥିକର ଧ୍ରୁବତାରା
ଅନ୍ଧର ନୟନ ଦରିଦ୍ରର ଧନ ଦୁଃଖହାରୀ । ୧

ସାଧନ ଧନ ସାଧୁର ଶାନ୍ତି ସଦନ ଭକ୍ତର
ସତ୍ୟ ସନାତନ ସ୍ନେହେ ଅନୁପମ ତାପହାରୀ

ଦୁରୁଜନେ ନତି ତାର ସାଧୁ ସାଧକେ ତଥାର
ରଖନ୍ତି ସେ ଯେତେ ହେବ କେ ଜଗତେ ସେହ୍ନପରି । ୩ ।

ଦୁର୍ଜନ-ମନ-ଗଞ୍ଜନ ସୁଜନ-ମନ-ରଞ୍ଜନ
ନତ ବତରନ୍ତି ଭବେ ସୁଖଶାନ୍ତି-ପୀୟୂଷଧାର । ୪ ।
ସୁମର ଅନ୍ତରେ ଚର ସେହ୍ନେ ନୀତ ମନୋହର
କ୍ଷଣେ ଛେଦ ଭବ-ଡୋର ଯାଅ ପାପତାପୁଁ ତର । ୫ ।



ରାଗ—ଏରକାଲ                    କାମୋଦ—ଅଡ଼ତାଳି

( ମନ ଈଶ୍ୱରଙ୍କ ଅଙ୍କ ପରଶ ଭରେ—ବୃତ୍ତେ )

ମୋର ହୃଦୟହାରୀ ନୟନତାରା
ଭବଭୟ-ତାପହରା । ( ଧ୍ରୁବ )
ମନେ କଲେ ତବ ପ୍ରେମ     ନାଚ ଉଠେ ତନୁ ପ୍ରାଣ
ହର ନିଏ ତାକୁ କ୍ଷଣେ ହୃଦୟଚୋରା । ୧ ।
ଗଲେ କେହ୍ନେ ନେଜେ ଦେଜ,     ତାକୁ ରୁହ୍ନ ନ ବରଜ
ମନେ ଡାକୁ ପ୍ରାଣେ ତା'ର ଅମୃତ-ଧାରା । ୨ ।
ଯେତେ ବଡ ପାପୀ ହେଲେ     ବନ୍ଧୁ ବୋଲି ଡାକୁ ଭଲେ
ପ୍ରଭୁପଣ ଭୁଲି ଦେଉ ଆତ୍ମପାସୋରା । ୩ ।
ପାପଗହ୍ନମାନେ ପୁଣି     ଦଣ୍ଡ ଦିଅ ନାହିଁ ଜାଣି
ପଡ଼ିଅଛୁ ପାଦତଳେ ଦୁରିତହରା । ୪ ।
କରପଦ ଯୋଡ଼ି ମୋ'ର     ମଥା ନଇଁ ବାରବାର
ଡାକେ ବାରେ ଫେଡ ଦୁଃଖ ସନ୍ତାପହରା ୫ ।



ରାଗ—ଝିଞ୍ଜୋଟ            ତାଳ – ଅଦ

ଆତ୍ମାର ମହିମା ନୁହଁଇ କଳଣା
ସେ ତ ଦଏ ପରାଣେ ଶକତ ନାନା
କରେ ପୂର୍ଣ୍ଣ ଭକ୍ତ ମନ କାମନା (ଘୋଷା)
ପଲକେ ପେଷଇ ଅନ୍ତରେ ପ୍ରେରଣା
ବତରେ ମୋଦେ ବମଳ ପ୍ରେମ-କଣା
ଦଏ ପୁଣି ଶାନ୍ତ ବନାଶି ଯାତନା—୧ ।
ଅଗ୍ନି ରୂପେ ନାଶେ ପାପ କଳପନା
ଉପୁଜାଏ ପ୍ରାଣେ କେତେ ଉଦ୍ଦୀପନା
ଜୀବନ କରେ ନୂଆ ଦେଇ ଚେତନା—୨ ।
ତାପ-ନାଶନେ ପ୍ରବଳ ବଜୟସେନା
ସତ୍ୟ ଆଳାପେ ବଳାଏ ମନ ବାସନା
ଶକତହୀନ ଜନେ କରେ ଜଗର୍କ୍ଷିଣା — ୩ ।
ଜୟ ଜୟ ପରମାତ୍ମା ଘେନ ବନ୍ଦନା
ଜାଳ ଅନ୍ତରେ ମମ ତବ ଅଗ୍ନି କଣା
ହେଉ ଜୀବନ ପୁଣି ବଶୁଦ୍ଧ ସୁନା—୪ ।



ରାଗ—ଖାମ୍ବାଜୀ            ଅଦ୍ଧତାଳ

( ଛେଲିଙ୍ଗ—ଏସୁନ ନାମାମୃତମୂ—ବୃତ୍ତେ )

ଆତ୍ମାର ପ୍ରେମ ପରଶେ            ଶୋଭରେ ଶରୀର
କି ଦେବ ଉପମା ଉଚିତର
ଖୋଜ ଉବେ ନିରନ୍ତର ଆତ୍ମାକୁ ... ଧ୍ରୁବ

କ୍ଷଣେ ହୃଜଲେ    ଭକେ ପରାଣ ଅତ ଆତୁର
ବରତେ ନିତ ମତ ଅଥିର
ଜଳ ନୁହେ ଜଅଁତର    ସେହୁ ଶକତ ପ୍ରେମର । ୧ ।
କରେ ଜୀବନ ଗତ  ବମଳ ନାଶି ତ୍ୱରିତ
ନାଚେ ପରାଣ  ହୋଇ ଉଷତ
ଦେଖି ଲୋକେ ଆଚମ୍ବିତ    ଅପାର ମହିମା ଯାର । ୨ ।
କହେ ଯାହା କଛି ଅଛି ମୋର ହେଉ ତୁମ୍ଭର
ଆଉ ନ  ରହୁ କଛି ମୋହର
କର ତବ ନଉକର    ଦଅ ଶକ୍ତି ସରଗର । ୩ ।



ଜଣାଣ

କରୁଛି  ବନ୍ଦନ   ଜଗତକାରଣ
ପୋଷ ହେ ଧରମ ଅମ୍ଭାକୁ ବହନ । ଘୋଷା ।
ତେଜ ନଜ ଜନ ଜାତ ଅଭିମାନ
ଲୋଡ଼େ ସେନା ନାଥ ଚରଣେ ପରିତ୍ରାଣ । ୧ ।
ଦଗଧ ପରାଣେ ଢାଳ କୃପା କ୍ଷଣେ
ନାମ କର ଧନ୍ୟ ଭକତରଞ୍ଜନ । ୨ ।
ସୁଖଶାନ୍ତିଶୂନ୍ୟ  ଦଦବ  ପବଣ
ଦଅ  ପ୍ରଭୁ  ଶକ୍ତି  ନ କର ବାରଣ । ୩ ।
ପବନ ଆମ୍ଭାରେ ରସାଣି  ଜୀବନ
ଦୂର କର ମୋର ଦାରୁଣ କଷଣ । ୪ ।
ଡ଼େର କର୍ପା ଆଉ, ଘେନ ହେ ଜଣାଣ
ଯୁଗେ ଯୁଗେ ଉଡୁ ଅଭୟ ନଶାଣ । ୫ ।



ଓଡ଼ିଶା, ଭୁବନେ

ରାଗ—ମୋହନା ରୂପକତାଳ

ପ୍ରେମ ସିନା ନିତ୍ୟନବୀନ
ରାଜେ ବର୍ଣ୍ଣେ ଯାଙ୍କ ବେଶ ମୋହନ । ପଦ ।
ଇହ ପରେ ସବୁ ସମାନ
ନାହିଁ ତାର ପୁଣି ବିରାମ
ମନେ ଭାଷି ମଞ୍ଜୁ ବଚନ
ବହିରେ ରଞ୍ଜି ହୃଦୟଗଗନ ।୧।
ମାନେ ନାହିଁ କିଛି ବଧାନ
କରି ଦିଏ ମତ ଅଜ୍ଞାନ
ତେବେଳେ ନିଆଁ ପାଣି ପବନ
ଲଙ୍ଘ କରୁଥାଏ ଲୋକେ ଭ୍ରମଣ । ୨ ।
ଛାଡ ପାଶ ଯେତେ ଯାତନ
ନ ଘେନେ କେବେ ହେଲେ ଅପମାନ
ନିଜକୁ କରିଣ ସାମାନ୍ୟ
ନିଅଇ ଜଣି ପରମନ । ୩ ।
ନ କରି ଡରେ ପରାଭିନ୍ନ
ସକଳେ କରେ ଆଲିଙ୍ଗନ
ମରତେ ଉଡ଼ାଇ ନିଶାଣ
ରଟେ ନିତ ବନ୍ଧୁ କୀର୍ତ୍ତି ଅଗଣ୍ୟ । ୪ ।



ରାଗ - ମଦନା ତାଳ—ରୂପକ

ଧନେ ଯାହା କରିଲେ ଜୀବନେ ସେହି ମୋତେ
କହ ମୁହିଁ ପାରୁ ନାହିଁ ତାହା ସତେ ସତେ । ପଦ ।

କପ ମଟେନ ଭାଳ          ଦେଖିଲେ ପ୍ରୀତ ଛାଳ
ଚମକ ପଡ଼ ଅନାଇ ଦେଲ ମୁଁ କଷ୍ଟରେ । ୧ ।
ମଞ୍ଜୁଳ ମୂରତ           ଅକଳନା-ଗତ
ବମଳ ନୀତ ଟାଣିଲା ମତ ଆଚମ୍ବିତେ । ୨ ।
ମଧୁର ଆଳାପେ          ମୋହିଲେ ଅଳପେ
ମଜ୍ଜିଲା ମନ ହଜଲା ଜ୍ଞାନ ଅଣାୟତେ । ୩ ।
ପରାଣ ଆତୁରେ          ପୋଟାଳ ପୟରେ
ପାରିଲି ଡ଼ାକ ପଡ଼ିଲା ଶୋକ ତଳେ ଯେତେ ।୪।
ଜଗତପାବନ            ଜୀବର ଜୀବନ
ହୃଦେ ଆସୀନ କଲେ ବନ୍ଧନ ଅଦଭୁତେ । ୫ ।



ରାଗ—ଭୈରବୀ          ତାଳ—ଅଠତାଳୀ
(ଶ୍ୟାମ ସମ କମନୀୟ ନାହିଁ ଆଉ—ବୃତ୍ତେ)

ପ୍ରେମ ବିନା ସଂସାର ଅସାର ସିନା
ପ୍ରେମ ଜଗତେ ଉଡ଼ାଏ ଜୟବାନା । ପଦ ।
ପଲକେ ହରେ କଷଣ,          ମୁଲକତ କରେ ପ୍ରାଣ
ପାଷାଣ ପରାଣ ଭଜେ ତନମନା । ୧ ।
ପାଲିଛିଲେ ନିଉନ୍ଛଣା          ପାଉ ନଜ ପ୍ରୀତ-ଦେଣା
ପୋଟାଳ ଧରେ ଯେତେ ଯେ କଲେ ମନା । ୨ ।
ପଡ଼ଗଲେ ଧନେ ଖାତେ          ପଥତ ମଣି ତୁରତେ
ପୋଛି କାଳମାକୁ ହାତେ କରେ ମୂନା । ୩ ।
ପାସୋରି ଦଏ ଲାଞ୍ଛନା          ପେଷି ପକାଏ ଗଞ୍ଜଣା
ପ୍ରପଞ୍ଚେ ତାର ତୁଳନା ସେହି ସିନା । ୪ ।



ରାଗ—କାଓ୍ୱାଲ                                        ତାଳ—ଅଡ଼ଥାଳୀ

ସୁନ୍ଦର ମଧୁର ନାମଟି ତାଙ୍କର
ନ ପାରେ ମୁରୁଛି କ୍ଷଣେ ମାତର
ଯେଉଁଣେ ଗଲେ ତେଣେ ନାଚେ ହୃଦେ ମୋର
କି ଜାଣି କାହିଁକି, ନୁହଇ ପାସୋର । ପ୍ରଦ ।
ଦୁଇ ଦୁଇ କରି ଗୁରୋଟି ଅକ୍ଷର
ବାନ୍ଧି ରଖିଅଛି ସରଗ ସମ୍ଭାର
ଆଉ କାଠେ ଛନ୍ଦା ଟେସନ୍ଧ ନାମ କର
ହେବକୁ ନ ହେବଣୁଁ ପୁଲକେ ଶରୀର । ୧ ।
ନୀତଚମକ୍ତାର ପ୍ରୀତରତ୍ନାକର
ପାପୁଁ ତରିବାରେ ଅମୋଘ ମନ୍ତ୍ରର
ତୋହ୍ନ ପଦପ୍ରାନ୍ତୁ ନିମିଷେ ଅନ୍ତର
ନାମ ଭଜନରେ ଯାଉ ଦିନ ମୋର । ୨ ।



( ତୋମାର ପ୍ରେମ ଅନୁପମ—ବୃତ୍ତେ )

ତାହାର ନାମ ମନୋରମ ନାହିଁ ତାର ସମ ହେ
ଜପିଲେ ହରଇ ଶାପତମ ନାହିଁ ତାର ସମ ହେ—ଘୋଷା
ଧ୍ୟେନଲେ ନାମ ନଶିଦନ କରି ନିରମଳ ଅନୁକ୍ଷଣ
ନାଚୁଏ ଆନନ୍ଦେ ମନ ପ୍ରାଣ ନାହିଁ କେହି ସମ ହେ । ୧ ।
ରୋଗ ଶୋକ ତନ୍ଦ୍ରା ଯମ ଦହିଲେ ପଗଣ କରି ଠାଣ
ଭଜନ୍ତି ବରାମ ଶୁଣି ନାମ ନାହିଁ ତାର ସମ ହେ । ୨ ।

ଘନ ଘନ ଇନ୍ଦ୍ରିୟଗଣ ଗଞ୍ଜିଲେ ପ୍ରାଣ କରି ପଣ
କୁଅନ୍ତ ଅକ୍ଷମ ହେଲେ ନାମ ନାହିଁ ପରିସମ ହେ । ୩ ।
ନାମାମୃତ-ପାନେ ମତ୍ତ ହୋଇ ଭଜନେ ତାରେ ନିତ୍ୟ
ଜଗତ ହୋଇବ ସ୍ୱର୍ଗଧାମ ନାହିଁ ତାର ସମ ହେ । ୪ ।



ରାଗ—ଆନନ୍ଦ ଭୈରବୀ ତାଳ—ରୂପକ

(ଆଜ ଚଲ ତୁ କୁଞ୍ଜ ଭବନ ଗୋ—ବୃତ୍ତେ)

ଲୁଚିବ ନାହିଁ ଦୋଷଟି ଧରାରେ
ଦେବତ ଦର୍ପନ ପକାଇ ଧରା ରେ—ପଦ

ଦେଲେ ନୟନ୍କୁ ଭଲେ ଲୁଚାଇ
ସୁଲଭରେ ଫୁଟି ଚହଟାଇ
ଲେପିବ କାଳି ମୁହରେ ନେଇ
ଲାଜରେ ଭାଜି ହୋଇବୁ ଛତରା ରେ । ୧ ।

ଦାନ ଧିଆନେ ଦେଲେ ମୋଡାଇ
ରଖିଲେ ହୃଦେ ଲୁଝ ପକାଇ
ଦଣ୍ଡ ଦେବ ଦାଣ୍ଡରେ ନଗାଇ
ତୋ ନା'ରେ ପୁଣି ବାଜିବ ନାଗରା ରେ । ୨ ।

ଗୋଟିକରୁ ପୁଣି କୋଟି ହୋଇ
ଦହି ପରାଣକୁ ଝାଇଁ ଝାଇଁ
ଦଳି ପକାଇବ ପ୍ରାଣ ନେଇ
ବଳରେ କାନ୍ଦିବୁ ଜନ୍ମ ସାରା ରେ । ୩ ।

ଭଜିଲେ ଭକ୍ତଜନ ଗୋସାଇଁ
କଳୁଷ ଯିବ ନଶ୍ଟେ ଉଭାଇ
ନାଶିବ ପରାଣ ଥେଇ ଥେଇ
ଭବ ବଜାରେ, ପିଇ ସୁଧାଧାରା ରେ ।୪।



ରାଗ—ଧନାଶ୍ରୀ ତାଳ—ଅଦ୍ଧ

(କ ଅରେ ମନ ଦିନ ଗେଲ ହର ବଲେନା – ବୃତ୍ତେ)

ଯାଉଛି ଦିନ ପରେ ଦିନ ବୃଥା ରେ ମନ
ଯାହା କରିବାର କର ଯା ଥାଉଣୁ ଦିନ । ପଦ ।
ଯିବା ବେଳ ଆସେ ଯେବେ ଦେବ ଟାଣି ଖଣେ ପ୍ରାଣ
ଯମ ଦ୍ୱାରେ ପଡ଼ିଲେ ଯିବଟି ଭାଜି ଟାଣ । ୧ ।
ଯାହା ହେବ ସାଙ୍ଗ ତୋର ନିମେଷକେ ହେବୁ ଖାର
ଜଗି ଚାଲ ବାଟ ବଞ୍ଚି ଥିବୁ ଯେତେ ଦିନ । ୨ ।
ଯେ ବୁଣେ ଯାହା ସେ କାଟେ ତାହା ଆନ ତ ନ ଘଟେ
ଯଥାକୁ ଅଯଥା କଲେ ଝୁଙ୍ଗାଯିବ ମନ । ୩ ।
ଯା ପାସୋର ଆଗରେ ମନ ଯେତେ ଆମ୍ଭ ଅଭିମାନ
ଜଟିଳ କୁଟିଳ ରୀତି କର ବିସର୍ଜନ । ୪ ।
ଯିବ ଚାଲି ପାପ ତମ ନେଲେ ଯୀଶୁ ସୁଧାନାମ
ଯାତନାରୁ ପାଇବୁଟି ପରିତ୍ରାଣ ପୁଣ । ୫ ।

# ଯୁଗଚିନ୍ତା

ରାଗ—ମାୟାମାଳବ ଗୌଡ଼ା          ତାଳ—ମିଶ୍ରରୂପ

କି ଦଶା ଲୋକେ ଘଟିଲା   କାଳ ପୁଣି କାଳ ହେଲା ।ପଦ

କିସ ଥିଲା କିସ ହେଲା
କିଏ ସବୁ ନାଶ କଲା
କାନ୍ତାର କାଳ ପଡ଼ିଲା
କାଙ୍ଗାଳ ଲୋକ ଭଜିଲା ।୧।

ସୁଖ ଶାନ୍ତି କେଣେ ଗଲା
ସୁନା ଘର ଚୂନା ହେଲା
ସାନଲୋକ ବଡ଼ ହେଲା
ସତି ବଡ଼ ଲାଜେ ମଲା ।୨।

ପରତ ଧର୍ମ କମିଲା
ପାପ ପରବଳ ହେଲା
ପ୍ରୀତି ପୁଷ୍ପ ମଉଳିଲା
ପରସେବା ବୁଡ଼ିଗଲା ।୩।

ନୀତି ସମାଜୁ ହଜିଲା
ନର ପଶୁ ପାଲଟିଲା
ନ୍ୟାୟ୍ୟ ବିଚାର ତୁଟିଲା
ନିରାଶ ପ୍ରାଣ ଭଜିଲା ।୪।

ଭୟ ଭକ୍ତି ଭୁଷୁଡ଼ିଲା
ଭାବ ଭଙ୍ଗି ବଦଳିଲା
ଭଣ୍ଡ ଭୟେ ଭକ୍ତ ମଲା
ଭଗାରି କଷ ନ କଲା ।୫।

ଧନ ମମତା ବଢ଼ିଲା
ଧରମ ଛିଡ଼ି ପଡ଼ିଲା
ଧିଆନ ଦାନ କି ହେଲା
ଧୂଳିରେ ସତେ ମିଶିଲା ।୬।

ମନ ଅସାରେ ଭାସିଲା
ମିଛରେ ତନ୍ତୁ ମଜ୍ଜିଲା
ମନ୍ଦ ମତି ନସ୍ପିଲା
ମଦନମତ୍ତେ ମାତିଲା ।୭।

ଯାହା ହେବାର ତ ହେଲା
ଜଗି ଦାଣ୍ଡ ଗୋଲ ଭଲା
ଯିବ ଟଳି ଦୁଃଖଜାଳା
ଯଦି ଜପ ନାମମାଳା ।୮।




ରାଗ--ପୂର୍ଣ୍ଣାଗ ବରାଡ଼ି ଏକତାଳ

ସମାଜ ରୀତ କେଡ଼େ ଇତର । ପଦ ।
ନୟନୁ ଝରଇ ନୀର କେତେ ହୋଇ ଝର ଝର
ହେଉଛି ସମାଜର କାରବାର । ୧ ।
କହ କେତେ ମିଠା କଥା ପାପେ ଜରଜର ଯଥା
କରୁଥାନ୍ତି ଜୀବନ ଛାରଖାର । ୨ ।
ଭାଇ ବୋଲି ଡ଼ାକ ଚିର କରନ୍ତି କେତେ ଆଦର
ପଡ଼ନ୍ତି ଧରା ଫେଇଲେ ଅନ୍ତର । ୩ ।
ଦାଅନ୍ତି ଉଡ଼ାଇ ବେଳେ ଅକାରଣେ କରତାଳେ
ଭଗାରୀ-ହସା କରନ୍ତି ଆବର । ୪ ।
ଭଣ୍ଡିଲେ ପରକୁ ଯେତେ ଭଣ୍ଡୁର ସାଜଦା ତେତେ
ହେବା ପୁଣି ପ୍ରଭୁମାନୁଁ ଅନ୍ତର । ୫ ।



ରାଗ—ହରିକାମ୍ବୋଧ ତାଳ—ମିଶ୍ର ରୂପ

ଦୁନିଆ ରେ ଦୁନିଆ ରେ ଛୁଅଁ ନା ତୁହ
ଭାଳ ଭାଳି ତୋର ରୀତ ହୁଏ ମୁହଁ ବାଛି ।
କଳାକୁ ଧଳା, ଧଳାକୁ କଳା କରୁ ତୁହ
ତୋର ସଣ ଆଉ କାହିଁରେ ଖୋଜି ପାଉ ନାହିଁ । ୧ ।
ମାରିଆ ପଣ ଅମୋଦ୍ଧ ବାଣ ତୋର ତହିଁ
ଟାଣ ପୁଣି ବଡ଼ ଜୋର ନୁହେଁ ଅଟକାଇ । ୨ ।
ସାନକୁ ବଡ଼, ବଡକୁ ସାନ କରତ ବହ
ମନେ ଭୀତ ଦେଉ ଅତ ପ୍ରାଣେ କେତେ ଦହ । ୩ ।

ଜୁହାର ଶତେ କରଇ ତୋତେ ଦୂରୁ ଚାହିଁ
ବିଭୁ ଶକ୍ତି ଭଜି ନାଥ ହେବ ମୁହିଁ ଜୟୀ । ୪ ।

---

ରାଗ—ଆନନ୍ଦ ଭୈରବୀ ଏକତାଳି

ତୁମ୍ଭେ ପରା ଦୁଃଖି-ଦୁଃଖ-ହୋନା,
ମୋତେ କପାଇଁ ଟିକାଏ ନ ଅନା । ପଦ ।
କାହୁଁ ସହିବ ବଷମ ଯାତନା
ମରମେ ଭେଦ ଧଅଇ ଯନ୍ତ୍ରଣା । ୧ ।
ମନ ଗଞ୍ଜଣା ଦୁହଇ କଳନା
ଦହଇ ପରାଣ ସାଜ ନର୍ମମା । ୨ ।
କେତେକାଳ ଆଉ ରହିବ ଶମନା!
ଦେବ ହେ ଦାସେ ଦାରୁଣ ବେଦନା । ୩ ।
ଅଣ୍ଟିଲାଣି ପ୍ରଭୁ ଭବ ଗଞ୍ଜନା
ନ କର ଡେରି ବତର କରୁଣା । ୪ ।



( ସେତ ପ୍ରେମ ନାଥ ଅନାଥ ନାଥ—ବୃନ୍ଦେ )

ପବନ ପବନ ହେ ମହାପବନ ପରମ ଗୁଣସାଗର
ତବ ବାନା ଛର ଉଡ଼େ ଫରଫର ଭବ ମନ୍ଦିର ଉପର ।ଧ୍ରୁବ
ସାରା ଜୀବନରେ ଲଭିଛି ଅନ୍ତରେ ସ୍ନେହାଶିଷ କେତେ ଥର
ରୋଗ ଶଯ୍ୟା ପାଶେ ଅମିୟ ପରଶେ ସନ୍ତାପ ହରନ୍ତି ମୋର ।୧

ସଙ୍କଟ ନୈରାଶ୍ୟ ମଧ ଅଭିଳାଷ କେତେ ଅନ୍ତ କର ଦୁଃଖ
ଶତ୍ରୁଦ୍ୱାରେ ପଡ଼ି ଡାକିଲି ନ ଛାଡ଼ି ଜାଣିଲି ବଇରି ବଳ ।୨।
କେସନ ଭୁଲିନ ସେଥୁଁ ଶତ୍ରୁ ହନ ଯାଏ ନାହିଁ ମନୁଁ ମୋର
ଜୀବ ଯିବା ଯାଏ ଥାଉ ମନ ଲକ୍ଷ୍ମୀ ଜପେ ନାମ-ମନ୍ତ୍ର ।୩।



ରାଗ—ଧନାଶ୍ରୀ    ତାଳ—ମିଶ୍ର ରୂପକ

କର ନାଥ କରୁଣା    କାତରେ କରେ ଜଣା
ଡାକ ମୋର କେଉଁ ଅଚେତର ଶୁଣ । ପଦ ।
ଅନ୍ତର ବେଦନା    ନୁହଇ କଳନା
କର ଦୋଳାଣି ମୋର ନୁଝାଁ ତା । ୧ ।
ଦୁଃଖୀ-ଦୁଃଖ ନାଶନା    ନାମେ ଉଦ୍ଭେ ବାନା
ମୋ ବେଳକୁ କି ଅଭି-ମୁଖାମଣା । ୨ ।
କଲେ ଯନ୍ତ୍ରଣା ଉଣା    ତବ କୃପାକଣା
ଭବ ପଥେ ହେବନି ନାଟବଣା । ୩ ।
ନାହିଁ ତୁମ୍ଭ ବିନା    ଆନରେ ଭାବନା
ରଖ ମୋତେ ପାଦୁରେ କର କୀଣା । ୪ ।



## ଭଜନ

ମିଶ୍ର—ଆଶାବରୀ

ଉଦ୍ଧର ଧର କେଶ ଶାନ୍ତ ସ୍ଥିର
କରେ ମୋ ବୋଧ ଦୂର ଦୁର୍ଗତି
ନାହିଁ ଆଶ୍ରୟ ଆଉ ମୋର । ପଦ ।

ତୁମ୍ଭ ଶବ୍ଦନେ ହୃଦ-ଗଗନେ
ଘୋଟଇ ଅନ୍ଧକାର
ଜୀବନ ପଥେ ଜନ୍ମାଏ କେତେ
ପାପ-ଖୁଆ ଯନ୍ତ୍ର । ୧ ।
କୁଚିନ୍ତା ନଡ ପରାଣ ମନ୍ଦି
ପ୍ରସାର ଅଧିକାର
କେଲାଣି ହର କଙ୍କର କର
ତୁରତେ ରକ୍ଷା କର । ୨ ।



ରାଗ—ଝିଞ୍ଜୁଟି ତାଳ—ମିଶ୍ର ରୂପ

ଜୀବ-ବଲ୍ଲୀ ଯିବ ମଉଳ
ବାରେ ନ ରଖିଲେ ଦେଇ କୃପାବାରି । ପଦ ।
ପାପ କୀଟ ଅନ୍ତରେ ବସା କରି
କାଟେ ଅହରହ ହୃଦ ବଦାରି । ୧ ।
ପାପ-ତାପେ ପରାଣ ଜଳ ଜଳ
ଗଲାଣି ସେ ତ ସହଜେ ଝାଉଁଳ । ୨ ।
ଜୀବଧନ କପାଁ କର ଡେ଼ର
ଗଲେ ବେଳ ବୁଡ଼ ଯିବଟି ସରି । ୩ ।
ଦହଗଞ୍ଜେ ପଡ଼ିବ ନଶ୍ଚେ ଠକ
ନ ଧରିଲେ ଉଦ୍ଧାର ବଣ୍ଣମାଳୀ । ୪ ।



ରାଗ—ତୋଡ଼ିଭଙ୍ଗଲ    ତାଳ—ଅଡତାଲ

ପବନ କର ହେ ! ଜୀବନ ନିରଞ୍ଜନ
ପରିମଳ ଭକ୍ତ ପ୍ରାଣ - ତୋଷା
ପାପ-ସନ୍ତାପନେ    ପଡ଼ି କଳିବଳେ
ପ୍ରଳାପେ ନ ସରେ ଦିନ । ୧ ।
ପ୍ରେମ-ପଞ୍ଚାମୃତ    ପିଆଇ କଞ୍ଚିତ
ପୁଲକିତ କର ମନ । ୨ ।
ପତିତପାବନ    ପରମ କାରଣ
ପଦ୍ମରେ ନେଲି ଶରଣ । ୩ ।



ରାଗ—ସାହାନା    ତାଳ—କାଓ୍ୱାଲି

(ବରଷ ଆଜିତ ବାର—ବୃନ୍ତେ)

ବଡର କରୁଣା-ବାରି
(ନାଥ) ଝରୁ ନିତ ପ୍ରାଣେ ମୋର ମଧୁରେ ସଞ୍ଚରି । ଧ୍ରୁବ ।
ଆସିଛି ଦୁଆରେ କେତେ ଆଶା କରି
(ମୁହିଁ) ଶୀର୍ଣ୍ଣ ହସ୍ତେ ଜୀର୍ଣ୍ଣ ପ୍ରାଣ-କମଣ୍ଡଳୁ ଧରି । ୧ ।
ମାଗେ ଯାହିଁ ଧନ ଭିକାରୀର ପରି
(ଆହା) ଭୁଲେ ସିନା ଭବଦାତ୍ରେ ପ୍ରେମ ଭିକ୍ଷା କରି । ୨ ।
ଚଦରା ଯାଉଣେ ଦୁଃଖ ଅଛି ପୂରି
(ତୁମ୍ଭ) ଖୋଜ ଭବେ ନ ପାଇବୁ ଜଣେ ମୋର ସରି । ୩ ।
ସନ୍ତାପନ ହୃଦେ ଖରତର ଜଳି
(ସଦା) ଦେଲାଣି ତ ସନ୍ତାପିତ ଜୀବନକୁ ସାରି । ୪ ।

ଦିଅ ପ୍ରାଣେ ଭରି ତବ କୃପାବାରି
(ମୁହିଁ) ତୃଷିତ ଅନ୍ତରେ ଥରେ ପିଇଯିବି ତରି । ୪ ।



('ଅପ ପ୍ରବେ ଅସ'—ବୃନ୍ଦ୍ରେ)

ଯେନ ଯେନ ଆଜି ମୋର ଏହି ଉପାସନା ହେ !
ଟାକି ବସିଅଛି ନୀରସ ପରାଣେ ଦିଅ ପ୍ରେମ-କଣା ହେ । ଘୋଷା

ସଜଳ ନୟନେ ସରଳ ପରାଣେ
କରଇ ବନ୍ଦନା ହେ
ଦରଶନ ଲାଗି ଦ୍ୱାରେ ଅଛି ଜଗି
ପୂରାଅ କାମନା ହେ । ୧ ।
ଦେଖାଅ ବଦନ ଦୟାର ସଦନ
ଜାଣି ମୋ ବେଦନା ହେ,
ଦୋଷ କର କ୍ଷୟ ଦୂର କର ଭୟ
ଚେତାଇ ଚେତନା ହେ । ୨ ।
ନାହିଁ ଭକ୍ତି ଜ୍ଞାନ ନୀତିଶୂନ୍ୟ ପ୍ରାଣ
ଅପୂର୍ଣ୍ଣ ସାଧନା ହେ,
ପୁଲକିତ କର ପ୍ରାଣ ଭିକ୍ଷୁକର
ଘେନ ବନ୍ଦାପନା ହେ । ୩ ।



ରାଗ—ମାୟାମାଳବ ତାଳ—ମିଶ୍ରି ରୂପ

ଯାହା କରିବାର କର ନାଥ ମାର ଅବା ତାର—ପଦ
କାତରେ ପସାରି କର କରେ ଡଇନ ଛାମୁର
ଜୀବନରେ ହତାଦର ଏଣିକ ଆଉ ନ କର—୧
ଦେଲେ ତୁମ୍ଭେ କରି ପର ହେବ ମୁହିଁ ଆଉ କା'ର
ହକନାକେ ଜୀବ ତାର ଛାଡ଼ି ହେବ କାରଖାର—୨
ଦୀନବନ୍ଧୁ ନାମ ଆଉ ଥାଇ ଲାଭ କିସ ମୋର
ଦାତା ଆଗେଁ ଭିକାରୀର ଦୁଃଖ ଯଦି ନୁହେ ଦୂର—୩
ହେଲେ ପଛେ ହେଉ ଖାର ଆଉ ଯେତେ ଇଚ୍ଛା ମୋର
ରଖ ପଦ ପ୍ରାନ୍ତେ ଚିର କରି ଧୂଳୀରେ ଧୂସର—୪



ରାଗ—ଝିଞ୍ଜୋଟି ତାଳ—ମିଶ୍ର

( ଝଗଡ଼ି ହେଲେ ହେଁ ଶ୍ୟାମ—ବୃତ୍ତେ )

କିପରି ନାଥ ଦଣ୍ଡିବ ହେ
କାହା ମୁଖ ଚାହିଁ ଦୁଃଖ ହରିବ ହେ । ପଦ ।
କେଉଁଣେ ଲୁକିଲ କେତେ କିସ ଭାବ
ମନୁଁ ଯାଉ ନାହିଁ ପ୍ରିୟ ମୁଖଛବ । ୧ ।
ବିଚ୍ଛେଦ ବେଦନା କେତେହେଁ ସହିବ
ମନର ଦଥା କ ମନରେ ମାରିବ । ୨ ।
ଝର ଝର ନୀର ନୟନୁ ସରିବ
ଶୁଖାଇ ଦେଲାଣି ଜୀବନ ଜାହ୍ନବୀ । ୩ ।

ଆଶା ତରଙ୍ଗିଣୀ ହୃଦୟରେ ଦବ
ଯେବ ଯିବା ଶୋକ-ପାରବାରେ ଡୁବ । ୪ ।
ଜୀବ-ଉପବନେ ପଲ୍ଲବେ ପଲ୍ଲବ
ପୂରାଅ ଫୁଲକେ ପାତକୀର ଦାବୀ । ୫ ।



ରାଗ—ଖାମ୍ବାଜ ଏକତାଳି

(ପ୍ରଭୁରେ ବସିଛୁ ହେ ପାଦତଳେ—ବୃତ୍ତେ)

ପ୍ରଭୁ ! ମୋହୁଛୁ ହେ ପ୍ରେମାଳାପେ
ରହୁଥିବ ଅବରତେ ଅଭୟ ପଦ-ପାଦପେ । ଧ୍ରୁବ ।
ଯେବେ ନଜ ଇଚ୍ଛାବଶେ ଉଡ଼ି ବୁଲି ଚନ୍ଦ୍ରାକାଶେ
ଯାଏ ହୁଡ଼ି ପଥ ତୋର ଧର ନ ଠେଲ ସନ୍ତାପେ । ୧ ।
ପୂର୍ଣ୍ଣ କର ନଜ ବାଞ୍ଛା ପଣ୍ଡ କଲେ ତବ ଇଚ୍ଛା
ଦୋଷ ଦେବା ତେଣେ ଥାଉ କ୍ଷମ ବାରେ ଅନୁକମ୍ପେ । ୨ ।
ଜାଣେ ଅନୁଭବେ ମୁହିଁ ବାଞ୍ଛା-କଳ୍ପତରୁ ତୁହି
ଡାକ ଶୁଣି ରକ୍ଷା କରୁ ପଡ଼ିଗଲେ ଭବ-କୂପେ । ୩ ।
ଆଶା କର ମଧୁଫଳେ ଦୟା କରିଅଛୁ ଡାଳେ
ଧର ରଖ ଯେତେ ଖସି ନ ପଡ଼େଟି ଭବତାପେ । ୪ ।



( ଅହେ ନରମଳ ସୁନ୍ଦର ନନ୍ଦୁଲ—ବୃତ୍ତେ )

ଭବ ହାଟେ ଧନି, ସ୍ୱାର୍ଥେ ହୋଇ ବାନ୍ଧି
ଧନ କାଟେ କାନ୍ଦି କାନ୍ଦି ।

ଆମ୍ଭର ଗଞ୍ଜଣା ହୃଦର ବେଦନା
ହେଲାଣି ଜୀବନ ଗୁଣ୍ଡି । ଧ୍ରୁବ ।
କେତେ ଦୁଃଖ ଦେଇ ପୁଣି ପାଶେ ଥାଇ
ରଖ ଗୋ ସଗରେ ବାନ୍ଧି,
ଦେଇଣ ଚେତନା ଭାଙ୍ଗିବାକୁ ସିନା
ସୟତାନ—ଅଭିସନ୍ଧି । ୧ ।
ମରମ ତୁମ୍ଭର ଅତି ସୁକୁମାର
ଭକ୍ତପ୍ରାଣେ କ୍ରନ୍ଦାକ୍ରନ୍ଦି,
କୋମଳ ଚରଣେ ଆଜ୍ଞଁସି ସରସେ
କର ଜଗ ନର ବନ୍ଦୀ । ୨ ।
ଘୁଞ୍ଚାଅ ଦୁରାଶା, ମିଟାଅ ପିପାସା
ବଞ୍ଚିବି ଟୟନେ ନ କାନ୍ଦି,
ନ କର ନିରାଶ, ଦେଇ ପ୍ରୀତି-ରସ
ପଦ-କଞ୍ଜେ ରଖ ଛନ୍ଦି । ୩ ।



ରାଗ—ଝିଁଝିଟି ତାଳ—ଏକ

( ଡାକ ଡ଼ାକ ତାରେ ପ୍ରାଣ ଖୁଲେ ଡାକ—ବୃତେ )

ଆସ ଆସ ଥରେ ଦଦରା କୁଟୀରେ
ଅନାଇଁ ବସିଛୁ ଆତୁରେ
ମନ—ଭିତ୍ତି ବଳ ହୋଇ ଟଳମଳ
ଥରେ ହତାଶ-ଲତାସରେ । ଧ୍ରୁବ ।

ବଶ୍ୱାସ-ପ୍ରାଚୀର କମ୍ପେ ବରାବର
ଦୁଃଖ-ଝଡ଼ ଖରେ ବାଜି ତା ଦେହରେ
ପୁଣ୍ୟ-ସ୍ତମ୍ଭ ଥିରେ ଝିଡ଼ିଣ ଅନ୍ତରେ
ଦୋହଲେ ଦୁରିତ-ବଜରେ । ୧ ।

ପ୍ରେମର-ଛାଉଣି ଭାଙ୍ଗି ଖସେ ଟାଣି
ଅପ୍ରୀତି-କରକା ଘାତରେ ତାଟକା
ଶାନ୍ତିର କପାଟ ହୁଏ କଟକଟ
ଫାଟି ରାଗ-ଚନ୍ଦ୍ରା ତାପରେ । ୨ ।

ଆସି ଦିଅ ଦେଖା ଆହେ ପ୍ରାଣସଖା
ମିଟି ଯାଉ ମୋର ଆଶା ପରାଣର
ଭଙ୍ଗା ଘର ପୁଣି ଲଭୁ ନୂଆ ଠାଣି
ବତରୁ ସୁକାନ୍ତ ମଧୁରେ । ୩ ।



ରାଗ – ଝିଞ୍ଜୋଟି ତାଳ— ଏକ

( କରି ଯୋଡ଼ ଭରି—ବୃନ୍ଦେ )

ପ୍ରାଣଭିତରେ ଥରେ ଡ଼ାକ ଡାକ ତୁ ରେ
ଆସିଅଛୁ ଏତେ କାଳେ ସେ ଦୁଆରେ
ଯାଅ ତାଙ୍କ ପାଶେ ଫେରି ତରତରେ
'ଦେଖା ନୋହିଲାରେ' କହ ନିରାଶାରେ । ଘୋଷା

ଅଙ୍ଗେ ଅଛୁ ଯେବେ ଦହୁ ଦୁଃଖ ସହ
ଜୀବନ ସମରେ ଯେବେ ଥାଅ ଦହ
ଅନ୍ତରେ ବିଷାଦ ଧାରେ ଯେବେ ରହ
ଯିବ ସବୁ ଗୁଳି ଡ଼ାକିଲେ ଆତୁରେ । ୧ ।

ନିରାଶ ମନରେ ନୀରସ ପ୍ରାଣରେ
ମନ କରି ଉଣା ଚେତିଲେ ତୁଣ୍ଡରେ
ସୁଖ ଶାନ୍ତି ଖେରେ ଯିବେ ଛାଡ଼ି ଦୂରେ
ଯିବୁ ସିନା ଭାସି ସନ୍ତାପ—ସାଗରେ । ୨ ।
ହୃଦୟ-ବେଦନା ମନର ବାସନା
ଧରି ରୂପ ନାନା ଦିଅନ୍ତି ଯାତନା
ବଢ଼ିବାଲୁ ସିନା ସାଧକ-ସାଧନା
ଜାଣି ଶୁଣି କୀଣା ହୁଅ ଶ୍ରୀପଦ୍ମରେ । ୩ ।



( ଦୁଃଖରେ ଉଣ୍ଣା ନ ହୋଇ—ବୃନ୍ଦେ )

ଜୀବନେ ନ ଚେତ ମତେ ଥାଅ ପାଶେ ନିରତେ
ପାଶେ ରହି ଢାଳ ହାତେ ପ୍ରେମ-ସୁଧା କଞ୍ଚୁତେ । ଘୋଷା ।
ସୁଧାମୟ ବାଣୀ କେତେ ଶୁଣି ମୋର କର୍ଣ୍ଣେ ନିତ୍ୟେ
କାମ କ୍ରୋଧ ଲୋଭ ଯେତେ ରଖିବନ୍ତି ଆୟତ୍ତେ । ୧ ।
ଶାନ୍ତିମୟ ସ୍ପର୍ଶ ଦତ୍ତେ ଲଭି ନବ ନୟମିତେ
ଯିବ ଭାସି ସୁଖ-ସ୍ରୋତେ କରି ସେବା ଜଗତେ । ୨ ।
ପୁଣ୍ୟମୟ ଗୁଣ ଗୀତେ ଅନୁସରି ଅବିରତେ
ରଚିବି ନବ ତରିତେ ଲୁଡ଼ି ପ୍ରେମ-ସରିତେ । ୩ ।
ପ୍ରେମମୟ ବନ୍ଧୁ ସତେ ଲୁଚି ନୁହେ କଦାଚିତେ
ଲୁଚାଇ ଧାଅ ହେ ! ମତେ ନାଶି ତମ ତୁରିତେ । ୪ ।



ରାଗ—ଖାମ୍ବାଜ　　　　ତାଳ—ଏକ

( ତୋମାର୍ ଛନ୍ଦଏ ପ୍ରାସାଦ ତୋମାର୍—ବୃତେ )

ତୁମର ସନ୍ଧାନେ　　ତୁମର ବଧାନେ
ଗୂଳ ହେ ମୋ ମନ ବାସନା ।
ଦେଲେ ତେଜ ତାକୁ　　ନଜେ ଚଳବାକୁ
ଦେଖ ପିନା କେତେ ଯାତନା । ଧ୍ରୁବ ।

ଉଡ଼ ପକ୍ଷୀ ପର ଡ଼ାକୁଁ ଡ଼ାକଲ
ପରାଣ-ପିଞ୍ଜରା ଭାଙ୍ଗି ବକଳେ
ଭୁଞ୍ଜି ନାନା ବଷଫଳ ନରୋଳେ
ପାଏ ମରମରେ ଗଞ୍ଜଣା । ୧ ।

ଜଗତ କାମନା ଜଗନ କଳ୍ପନା
କରଣ ସାଧନା ଜଳ୍ମାଇ ବେଦନା
ଢାଏ ଜନେ ଶତ ଦାରୁଣ ଯନ୍ତ୍ରଣା
ତୁଚ୍ଛ ମଣି ସାଧୁ ମନ୍ତ୍ରଣା । ୨ ।

ଆଉଥାଇ ତା'ରେ ଆତ୍ମା ରଶ୍ମି ଖରେ
ଉଡ଼ାଇ ଯତ୍ନରେ ତୁମର ଛାଞ୍ଚରେ
ଢଆଳ ସ୍ବନ୍ଦରେ ନୂତନ ଆକାରେ
କର ଦୂର ମୋର ଭାବନା । ୩ ।



ରାଗ—କେଦାର ତାଳ – ଝଁପୁତା

ତବ ମନ୍ଦିରରେ ବସି ଆନନ୍ଦରେ
ରୂପ ମନୋହରରେ ଚକ୍ଷୁ ନିରନ୍ତରେ
ଯାଉ ଦିନ ମୋର ବନ୍ଧୁ ଅକାତରେ
ମୋହ-ଜଡ଼ିତ ମହୀ ଭିତରେ । ପଦ ।

ତବ କୃପା ବଳେ ପ୍ରେମ-ଭକ୍ତି-ଭରେ
ନିରେଖି ଆନନ ହୃଦ-ଦର୍ପଣରେ
ଭାସୁ ମନମୀନ ଶାନ୍ତିସରିତରେ
ଭସାଇ ନରେ ପୀରତି ତରେ । ୧ ।

ତୁମ୍ଭର କଥାରୁ ନ ଟଳି ମୂଳରୁ
ହୃଦେ ନିଜ ଗାଉ ସୁଧାମୟ ଗୀର
ଜପିବ ମନ୍ତ୍ର ଜଡ଼ ଜଗତରେ
ନିରତ ରହୁ ପଦ ପ୍ରାନ୍ତରେ । ୨ ।



(ଯଉବନ ଗଲେ ଅଉ ଫେରେନା ଫେରେନା—ବୃତ୍ତେ)

ଜୀବନର ସେହି ସିନା ବାସନା ବାସନା । ପଦ ।
ତାର ବିନା କାମନା କାଳେ କାଳେ ପୂରେ ନା
ମନ-ସୁମନ ଫୁଟେ ନା ଫୁଟେ ନା । ୧ ।
ହୃଦୟ ମନ୍ଦିରରେ ଆଲୋକ ଜଳେ ନା
ପାପତମର ତୁଟେ ନା ତୁଟେ ନା । ୨ ।
ସରଗର ସୁଖେ ମନ ଆଉ ଧଳେ ନା
ପ୍ରାଣପିପାସା ମେଣ୍ଟେ ନା ମେଣ୍ଟେ ନା । ୩ ।



ରାଗ—ନଳିନଗୌଡ଼ା

( ଗାନ—କଲ୍ୟା ବାଣୀ )

ଗାଅ ମନ ବନ୍ଧୁ ଗାନ ସଦା ମହାନନ୍ଦେ
ରଖି ଚିତ୍ତ ଧର୍ମେ ସେହ୍ନ ଚରଣାରବିନ୍ଦେ । ୧ ।
ମାତିବେ ସରବେ ଶୁଣି ସେହ୍ନ ମୃଦୁ ଧ୍ୱନି
ହସିବ ଗଗନ ପୁଣି ନାଚିବ ମେଦିନୀ । ୨ ।
ଡ଼ରେ ପାପୀ ତାପୀ ହୃଦ ହୋଇ ଥରହର
କାନ୍ଦିବ ପଖଣ କରି ଦୋଷ ସ୍ୱୀକାର । ୩ ।
ନାଚିବ ଭକତ ହୃଦ ବୁଡ଼ି ପ୍ରେମଜଳେ
ନାଚେ ଯଥା କେକୀ ଦେଖି କଳା ମେଘମାଳେ । ୪ ।
ସନ୍ତରିବ ସେହ୍ନ ଚିହ୍ନ ସୁଖ-ପାରାବାରେ
ସନ୍ତରେ ହଂସ ଯେସନ ମୋଦେ ସରୋବରେ । ୫ ।
କଲେ ସେହ୍ନ ମଧୁ ଗାନ ନାଦ ତାଳେ ତାଳେ
ଯିବ ଦୋହ୍ନ ଶାନ୍ତି ଧାରା ପ୍ରାଣେ ଉଛୁଆଳେ । ୬ ।



ରାଗ—ଙ୍କାରବାଣୀ　　　　ତାଳ—ମିଶ୍ର ରୂପ

ଦେଖ ଏବେ କଷ୍ଟ କରିବ ମୁହିଁ—ଧ୍ରୁବ
ଧନ ମୋର ସରି ଗଲା　ଦୁଃଖ ତ ଆଉ ନ ଗଲା
ଦୀନବନ୍ଧୁ ସତେ କିମ୍ପା କଲା । ୧ ।
ଦୋଷ ଦିନା ଡ଼ାକି ଦେଲା　ଦେଶ ଯାକ ରଟି ଗଲା
ଦାଣ୍ଡେ ମୁଣ୍ଡ ପୋତା ଧୂଳି ହେଲା । ୨ ।

ଦାରୁଣ କପାଁ ଭଙ୍ଗିଲା  ଦରମରା ନଉ କଲା
ଦେହୁଁ ଜୀବନ ଯାତ୍ରା ନ ଟଳିଲା । ୩ ।
ଦୂରୁଁ ଢ଼ାଳ କୃପାଢ଼ୋଳା  ଦୂର କର ଦୁଃଖଜ୍ୱାଳା
ଦୟାମୟ ନାମ ହେଉ ଖୋଲା । ୪ ।



ରାଗ—ଭୈରବ ମିଶ୍ର  ତାଳ—ଝାରଫା

ସୁଦୂର ଦେଶୁଁ ଆସିଛି ମୁହିଁ ବିଦେଶୀ ବାଟୋଇ
ଭବ ପଥେ ଭେଟିବାକୁ ମୋର ଜୀବନର ସାଇଁ—ପଦ
ବାଟ କାଟି ଆସୁଁ ଧାଇଁ ପାପ-ତାପ-ଝାଳ ବୋହି
ଗଲା ମୁଣ୍ଡୁ ପାଦ ଯାଇଁ ଦେଖା ତ ନୋହିଲା କାହିଁ । ୧ ।
ଆଶା-ପଥେ ଚାହିଁ ଚାହିଁ ଭାଙ୍ଗେ ନଉ କେତେ ମୁହିଁ
କଷ କଲେ ପ୍ରାଣୁଁ ଯାଇ ତୁଟିବ ପିପାସା-ବାଇ । ୨ ।
ଆଶା ନିରାଶାରେ କାହିଁ ଷଣେ ପରଶିତ ହୋଇ
ପ୍ରାଣ ବନ୍ଧେ ତହିଁ ଥାଇ ଏ ଦୁଃଖ କହି ନୁହଇ । ୩ ।
ସବୁ ଆଶା ଛାଡ଼ି ମୁହିଁ ଡାକେ କୃତକୃତ୍ୟ ହୋଇ
ଆରତର ସଖା ତୁହି ଦେଇ ଦେଖା କର ସାହି । ୪ ।



ରାଗ—ଝିଞ୍ଜୋଟି  ତାଳ—ମିଶ୍ରରୂପ

ଗଲା ତ ପଡ଼ି ଧରା ଏଥର
ଆସୁଛି କହି ସତେ ନ ଆସିବାର । ପଦ ।
ଅନ୍ତରାତ୍ମାଁ ବାଣୀ ଶୁଣାଇବାର
ପରଖେ କରାଇ ଦେଖା ନ ଦେବାର । ୧ ।

କାନ୍ଦି କାନ୍ଦି ଭୁଇଁରେ ଗଡ଼ିବାର
ଦେଖି "ତୋଳି ନେବ କହ" ନ ନେବାର । ୨ ।
ଲୁଚକାଳି ଖେଳ ଖେଳି ଚତୁର
କେତେ କାଳ ଏହିପରି ନେବ ମୋର । ୩ ।
ଆଶାଲତା ଗଲେ ମଉଳି ଛାର
ଲୋକହସା ସିନା ହୋଇବଟି ସାର । ୪ ।
ଯାହା କରିବାର କଲ ଏଥର
ଏଣିକି ଦେଇ ଧରା ଶାନ୍ତ ବତର । ୫ ।



( ଅଜ କଷ୍ଟ ପ୍ରଭୁ—ବୃନ୍ଦେ )

ଆଉ କସ ବୋଲି କରିବ ଗୁହାରି
ସବୁ ତ ଦଶେ ଅନ୍ଧାର
ଯେ ଡ଼ାଳ ଧଇଲି ସେ ଗଲା ମଉଳି
କ୍ଷଷମ ବଡ଼ ସଂସାର । ଧ୍ରୁବ ।
କେତେ କେତେ ଦୁଃଖ ସାଥେ ରୋଗ ଶୋକ
ନଦାରେ ବୁକୁ ମୋହାର
ସୋଦର ସୁଜନ ବନ୍ଧୁ ପରିଜନ
ସକଳେ କଲେ ଇତର । ୧ ।
କାହାକୁ କହିବ ? କପାଇଁ କାନ୍ଦିବ ?
ଉଚିତ ନୁହେଁ ଶତ୍ରୁର
ଭିତରେ ଜାଣୁଛି ଦୁଃଖ ଯାକୁ ବାଛି
କାରଣ ସେ ତ ସୁଖର । ୨ ।

ସୁଖଠାରୁ ବଳି 'ଦୁଃଖ' ହିତକାରୀ
ରଷାଣି କରେ ସୁନ୍ଦର
ତାହାଙ୍କୁ ଜୀବନେ ବରିବ କଦାଚେ
ନ ଥିବ ଆଉ ବନ୍ଧୁର । ୩ ।



ରାଗ—ରାମ ପ୍ରସାଦ ତାଳ—ଏକତାଳ

(ପ୍ରଭୁ ବସିଛି ହେ ପଦତଳେ—ବୃତ୍ତେ)

ନାଥ କିଣିଛ ହେ ରକ୍ତମୂଲେ
କାଳେ କାଳେ ମୁଁ ନ ଯିବ ଛାଡ଼ି ଭୁଲି କାହା ବୋଲେ ।ଧ୍ରୁବ
ହେଲେ 'ଭାଗ୍ୟ' ବାମ ହେଉ ଗଲେ ପଛେ ସବୁ ଯାଉ
ମୁଣ୍ଡେ ପୋତା ହେଲେ ହେଉ ନ ଟଳିବି ଟଳେ ହେଲେ ।୧।
ରୋଗ ଶୋକ ଅନଟନ ଦେଲେ ଭାଙ୍ଗି ଅଭିମାନ
କରଛଡ଼ା ହେବ ନାହିଁ ପଡ଼ିଥିବି ପାଦତଳେ । ୨ ।
ସକଳେ ଶତ୍ରୁ ସାଜିଲେ ବରଜି ସ୍ୱଜନେ ଗଲେ
ଆନମନା ହେବି ନାହିଁ ନାମମାଳା ଜପିବାରେ । ୩ ।
କାଟି ଦେଲେ ଦେହୁଁ ମାଂସ ନେଲେ ପ୍ରାଣ ଦେଇ ବିଷ
କେବେ ହୋଇ ବିଚଳିତ ନ ଟେକିବି ପ୍ରାଣଡରେ । ୪ ।
ଏଠୁଁ ଜୀବ ଯିବାବେଳେ ନିରେଖି ମୂରତି ଡୋଳେ
କଣ୍ଠେ ଦେବି ପଦ ରଖି ବୋଲି କୃଷ୍ଣ ଅନ୍ତରାଳେ । ୫ ।



ରାଗ- ଘଣ୍ଟାନାଟ          ତାଳ—କାଓ୍ୱାଲି ମିଶ୍ର ।

( ଭୁଲି ପାରିବି କି ସେ—କୃଟେଞ୍ଚ )

ଭୁଲି ପାରିବି କି ସେ ମୋ'ର ପ୍ରାଣନାଥ
କେଲେ ଟାଣି ମଧୁରେ ଧରି ଦେବନ ହାତ । ଧ୍ରୁବ ।
ବସାଇ ପାଶରେ ମଣାଇଲେ ମୃଦୁସ୍ୱରେ
ବଡରି ଅନୁରାଗ ସଦାକାଳେ
ସେ ଚାରୁ ସୁହାସ ପୀୟୁଷ ପ୍ରେମ ପରଶ
ବହୁ ଆଣିଲା ପ୍ରାଣେ ଶାନ୍ତିବାତ । ୧ ।
ଦିବ୍ୟ ରୂପସାର ତେଜେ ନନ୍ଦି ଦିବାକର
ଚାହିଁ ନୋହିଲା ବଦନ ସୁନ୍ଦର
ଝଲସିଲା ପରାଣ ହଜିଲା କ୍ଷଣେ ଜ୍ଞାନ
ପାଇ ଚେତନା ହେଲି ବିମୋହିତ । ୨ ।



ରାଗ—ତୋଡି          ତାଳ—ଝୁଲା

ସୁଖ ପ୍ରଭାତେ ! କିପାଇଁ ଗଲ ଛାଡ଼ି ତୁରିତେ
ଡୁବାଇ ମତେ ଚିନ୍ତା ସରିତେ । ପଦ ।
କି ପାପ କଲି ସତେ          ଯାହା ପାଇଁ କି ମୋତେ
କହିଲ ନାହିଁ କଥା ଇଙ୍ଗିତେ—୧
ଅନୁସରି ଧାଇଁଲି          ଅନୁନୟ କରିଲି
ଅନାଇଲ ନ ଫେରି କହିତେ—୨
ପଦଚିହ୍ନ ମନ୍ଦିରେ          ପଡ଼ିଲି ଲୁଣ୍ଠି ଧୀରେ
ପ୍ରାଣ ଲାଗିଲା ଧାଇଁବା ଟିକିତେ

ମନ୍ଦିର ସଇକତେ ମଥା ଗଡ଼ିଲା ଯେତେ
ମାଜି ହୋଇଲା ମନ ଉଲଟେ —୪
ସେତକ ବେଳେ ଗଲା —ସୁଖ ଫେରି ଆସିଲା
ସବୁ ବେଦନା ଗଲା ଇଷିତେ —୫



ରାଗ—ମଙ୍ଗଳା ତାଳ—ରୂପକ

ସେଦିନର କଥା କାହିଁ କି ମନେ ତୋର
ହୋଇଲା କି ପାସୋର ପୂର୍ବ ଆଦର । ପଦ ।
ଏଣେ ତେଣେ ଅନାଇ କେତେ ଆତୁର ହୋଇ
କାହିଁ ଅନ୍ଧ କହ୍ନ ଡ଼ାକ ପାରିବାର । ୧ ।
କାନନର କାନ୍ତାରେ ସାଗର ନଦୀ ତୀରେ
ମେରୁଚୂଳେ ବସି ନାମ ଜପିବାର । ୨ ।
ଏକାନ୍ତରେ ଅନ୍ତରେ ଏକାଗ୍ରମନ ଶନ୍ତାରେ
ଭକ୍ତି ନୀରେ ତନୁ ଉନ୍ତାଇ ଦେବାର । ୩ ।
ପାଞ୍ଚି କେତେ ପ୍ରକାର ଶପଥ କରିବାର
ଲୋଟି ତଳେ ପାଟି କରି ଗାଇବାର । ୪ ।
ସେସବୁ ସେଦିନଠୁ ଆଜ ଗଲା କେଣେ ବରଜ
ଆଗ ପରି ଡାକ ଯିବ ଦୁଃଖଭାର । ୫ ।



(ଯୀଶୁ ପ୍ରଭୁ ପାଦ ଧର—ବୃତ୍ତେ)

ସେହୁ ମୋର ମୁହିଁ ତାର ତେବେ କାହିଁ ଆଉ ଡର । ପଦ ।

ଅପ୍ରାକୃତ ପ୍ରେମ ତାର ଯୋଡ଼ାଇଛି ସଙ୍ଗେ ମୋର
କରିବାରେ ଉପକାର ବହୁ ନେଇ ଦୁଃଖ ଭାର ।୧।
ଭାଇ ଭଗିନୀ ପିଅର ସକଳେ କଲେହେଁ ପର
କରିବେ ନାହିଁ ଇତର ସେହୁ ଦୟାର ସାଗର
ରୋଗ ଶୋକ ଶଙ୍କାଜର ଦେଲେ କଷ୍ଟ ନିରନ୍ତର
ଥାଇ ପାଶେ ଦୁଃଖୀ ମୋର କରିବେ ମନ୍ଦ ଅନ୍ତର ।୩।
ଜରା ମୃତ୍ୟୁ ପାପ ଗର ବହୁ ନେଲେ ପ୍ରାଣ ମୋର
ଦେଇ ସେ ଅଭୟ ବର ରଖିବେ ପଦ୍ମରେ ଶର ।୪।
ଦୁଃଖେ ସୁଖେ ବନ୍ଧୁବର ସେହୁ ପିତା ଜୀବେଶ୍ୱର
ଜାପଛି ଧରି ଅଞ୍ଚଳ ନୋଇଁବ ଚରଣେ ଶିର ।୫।



ରାଗ—ସୁରଟ     ତାଳ—ଆଡ଼

(ନାହିଁ ନାହିଁ ନାହିଁ ଅନ୍ୟ ଗତି—ବୃତ୍ତେ)

କହ କହ କିସ କଲେ ଦେଉ ଦେଖା
ଦରଶନ ବିନା କିସ ହେବ ରକ୍ଷା । ଘୋଷା ।
ଭିକାରୀ ହୋଇଲେ ଦେବୁ ଯଦି ଦେଖା
ତେଜି ସୁଖ ଆଶା ମାଗିବ ତ ଭିକ୍ଷା । ୧ ।
ଯୋଗୀ ହେଲେ ଯଦି ପାଇ ପାରେ ଦେଖା
ଛାଡ଼ି ଏ ସଂସାର ଘେନିବ ସେ ଦୀକ୍ଷା । ୨ ।

ଦୁଃଖ ଭୋଗି ପ୍ରାଣେ ଯଦ ପାଏ ଦେଖା
ଦଅ ଦୁଃଖ ଯେତେ ନ କରିଣ ଲେଖା । ୩ ।
ରୋଗୀ ହେଲେ ଯଦ ଦଅ ତୁମ୍ଭେ ଦେଖା
ରୋଗଶଯ୍ୟା ହେଉ ମୋର ଚିର ସଖା । ୪ ।
ପ୍ରାଣ ଦେଲେ ଯଦ ଲଭି ପାରେ ଦେଖା
ଛାର ପ୍ରାଣ ଦେବ ନ କରି ଅପେକ୍ଷା । ୫ ।
ଦେବା ଯାଏଁ ଦେଖା ଆହେ ପ୍ରାଣସଖା
ଚହିଁ ବସିଥିବ ସେ ପଥକୁ ଏକା । ୬ ।



ରାଗ—ଦେଶାଖ                    ତାଳ – ତ୍ରିପୁଟା

କରିବ ନାହିଁକି ମୁକ୍ତି
ହରେ ଯା ମନରୁ ଶାନ୍ତି । ପଦ ।
ଗାଇବ ନାହିଁ ସେ ଗୀତ
ଶୁଣୁ ନାହିଁ ଯେଣ୍ଟୁ ଭକ୍ତି
କହିବ ନାହିଁ ଭାରତୀ
କଳୁଷିତ ଯାର ଗତି । ୧ ।
ଚାହିଁବ ନାହିଁ ମୂରତି
ଚଗଲା କରେ ଯେ ମତି
କରିବ ନାହିଁ ପୀରତି
କପଟ ଯାହାର ରୀତ । ୨ ।
ଲୋଡ଼ିବ ନାହିଁ ସମ୍ପତ୍ତି
ଲଭଇ ଯହୁଁ ବିପତ୍ତି

ଖୋଜିବ ଯାହାଙ୍କି ଖ୍ୟାତ
ଖଣ୍ଡେ ନୟ ଜୀବନ ଶକ୍ତି । ୩ ।
ଭକ୍ତିଭରେ ଦିନ ରାତ
ଭଣିବ ପ୍ରଭୁ କୀରତ
ଭାଗବ ଭୟେ ଅରାତ
ଭୋଗିବ ଅଶେଷ ଶାନ୍ତି । ୪ ।



ରାଗ—ଆନନ୍ଦ ଭୈରବୀ

ଜୀବନେ ତୁମ୍ଭେ ସେନା ଭରଷା
ନ କର ଜଗତେ ଭଗାର ହସା ।ପଦ।
କପାଇଁ ଦଅ ପରାଣରେ ବଥା
ଜାଣି ଶୁଣି କିଆଁ ନ ଶୁଣ କଥା । ୧ ।
ହେଲାଣି ଆସି ବହୁତ ଡସ୍ତୁର
ଚଉଦଗ ଦଶେ ଘଡ଼ ଅନ୍ଧାର । ୨ ।
ପାଉ ନାହିଁ ପଥ କେତେ ଦରାଣ୍ଡି
ଯତେକ ନଦବ ହେ ଅଧମେ ଭଣ୍ଡି । ୩ ।
ଦାରୁଣ ବେଦନା ଦହେ ପରାଣ
କାନ୍ଦୁଁ ସହିବ ଏସନ ଜାଷଣ । ୪ ।
ନୁହ ତ ତୁମ୍ଭେ ପାଷାଣ-ଦେବତା
ଶୁଣ ଗୁହାରି, ଦୂର କର ଚିନ୍ତା । ୫ ।



ରାଗ— ବସନ୍ତ　　　　ତାଳ— ମିଶ୍ରରୂପ

କେଡ଼େ କଥା କଲ ଭସାଇ ପ୍ରାଣ ଦେଲ
ଗଲା ହାତୁଁ ଖସି କାତ ରେ । ପଦ ।

ପାପଜାଲେ ପଡ଼ି　　　　ଦୁଃଖଜଳେ ବୁଡ଼ି
ମୁଣ୍ଡରେ ହାତ ତାଡ଼ି　　　　ଡ଼ାକୁଛି ପାଶ ରଡ଼ି
ରଖ ହେ ତୋକ ଦୁରତ ରେ । ୧ ।

ସତ ପଥ ହୁଡ଼ି　　　　ଅଧରମେ ଜଡ଼ି
କୁଅଭିଲାଷେ ପଡ଼ି　　　　ଜୀବନ ଛୁଡ଼ି ଛୁଡ଼ି
ଗଲଣି ପର ଭିତରେ । ୨ ।

ମରଣ ସକଳେ　　　　ଦେଲେ ଲୋଡ଼ି ଦେଲେ
ଯାଏ ଭୁଲି ହେଲାରେ　　　　ବୁଝି ନୁହେଁ ଭଲେରେ
ସେ ମରମ ଜଗତ ରେ । ୩ ।

ହାହାକର କର　　　　ଦନ ଯିବ ସର
ସତରେ ପାଣି ପଶ　　　　ନ କଲେ ପ୍ରଭୁ ପାଶ
କର ପ୍ରସାର କଣ୍ଠ ତ ରେ । ୪ ।



ରାଗ— ଅନନ୍ଦ ଭୈରବୀ　　　　ଆଦ୍ୟତାଳ

( ହମାରେ ଲଗାନା ମା ବ୍ରଜବଧୂ— ବୁନ୍ଦେ )

ଅହରହ ନଜର ହତେ କର ଅଳ
ଅଗାଧ ସଂସାରସାଗରେ ବୁଡ଼ି ମଲି । ପଦ ।
କାଳଯାକ ଗଲା ସବ ଲୁହ ଛାଳି ଡାଳ
କୂଳେ ନ ଲାଗିଲା ଜୀବଧାରୀ ... । ୧ ।

ପର ଲାଗି କେବେ ହେଲେ ମୁହିଁ ନ ଭାକଲି
ପର ସେବା ସୁଖ କସ ବୋଲି ନ ଜାଣିଲି । ୨ ।
ଦୁଃଖୀ ଦୁଃଖ ଦେଖି ଥରେ ହେଲେ ନ କାନ୍ଦିଲି
ଦୟା ଧରମର ଧାର ଆଉ ନ ଧାରିଲି । ୩ ।
ପ୍ରେମନାଥ ନାମ ମିଛେ ମିଛେ ଘୋଷିଲି
ପର ଛିଦ୍ର ବାଛି କେତେ ନିଜକୁ ଠକିଲି । ୪ ।
ନିଜସୁଖ ପାଇଁ ଆଉ ନ କରିବ ଅଳି
ନିତ ପରହିତେ ଲାଗି ଦେବ ପ୍ରାଣ ବଳି । ୫ ।



ରାଗ—ମୋହନା                ଅଦତାଳ

ପାସୋର ନୁହେଁ ଯଥା        ସେ ଦିନର ତା କଥା ।ପଦ।
ଶେଷରେ କହିଲା କଥା
କଣ୍ଠାରେ ବହିଲା ବଥା
ଭୟରେ ନଇଁଲି        ମୁହିଁ ମଥା । ୨ ।
କଥାରେ ଭିଆଇ ଲଥା
ମାରୁଥିଲା ମନେ ମୁଥା
ଝାଉଁଳି ଷଣେ        ପଡ଼ିଲି ଯଥା । ୨ ।
ମେଲି ଆଖି ଯଥା ତଥା
ଦେଲି କହି ମନ କଥା
ଗଲା ଗ୍ଳଲି କହି        ରହ ଥା' ଥା' । ୩ ।

ରାଗ—ଖମାଜ ଅଦ୍ଧତାଳ

( ଘୁବ ଘୁବ ଧନ ନକ୍ଷି କାଲ ବନ୍ଧୁଗଲ—ବୃନ୍ଦେ )

କହ କାହିଁ ତାର କଥା ଥରେ ମତେ ଆଜ । ପଦ ।

ସେ ତ ବଡ଼ ଦଗାଦିଆ ସନ୍ଧବେଳ କରେ କଳଆ
ସନ୍ତୁଳ ପକାଏ ପ୍ରାଣ ଦେଇ କେତେ ଦାଉ । ୧ ।

କାନ ପାତ ଶୁଣୁଥାଇ କଥା ଯେତେ ଲୋକେ କହ
କେମନ୍ତ ଦେବ ଲଗାଇ କାଠ ହାଉଜାଉ । ୨ ।

ମଧୁର କଥାରେ ତାର ମିଶାଇ ରଖି ଜହର
ମାରେ ଶର ତରବର ମନେ ଭଲେ ଥାଉ । ୩ ।

ଭାବରେ ବଡ଼ ଚତୁର ଭାଙ୍ଗି ନୁହେଁ କଳ ତାର
ଭଗାର ମୁଣି ଆମର ବଞ୍ଚି ଥାଉଁ ଥାଉ । ୪ ।

କୁହାର ତାର ରୀତକ ଜଗତ ବଣା ଗଢକ
ଜପି ପ୍ରଭୁ ଶକତକ ଦନ ବୀତ ଯାଉ । ୫ ।



ରାଗ—କେଦାରଭରଣି ତାଳ—ରୂପକ

କର୍ପା ଆଜ ଜୀବନେ ଏତେ ସରକ କରିଲ ମୋତେ
ନ ଦେଇ ଦେଖା । ପଦ ।

ଆହେ ମୋର ପ୍ରାଣସଖା ଆସି ଏବେ ଦଅ ଦେଖା
ପୋଡ଼ା ପ୍ରାଣେ ପାରେ ଡ଼ାକ ପାତକୀକୁ କର ରକ୍ଷା । ୧ ।

ଭାଳ ଭାଳ ବେଳ ଗଲା ଭାଗ୍ୟ ମୁଣି ବାମ ହେଲା
ତେବେ କର୍ପା ନ ଦେଖିଲା ପାପ ବେଳ ରୂପ ରେଖା । ୨ ।

କାନ୍ଦି କାନ୍ଦି ନୀର ଭଲା କେଣେ ନୟନୁଁ ଢାଳିଲା
ପଡ଼ିଲା ପଗଶୁଁ ଛାଡ଼ି ଆଶା ଭରସାର ରେଖା । ୩ ।
ଦେଲା ଯେଉଁ ଭକ୍ତି ସତେ ଧଣୁ ନାହିଁ ତାଳେ ମୋତେ
କହୁଥିଲ ସବୁ ନାଥ ଦେବ ବୋଲି ବାପେ ଦେଖା । ୪ ।
ନମି ଶ୍ରୀପଦ ପଙ୍କଜେ ମିନତି କରେ ସନ୍ତୋଷେ
ନ କର ଆଉ ଏଣିକି ନିମିଷେ ହେଲେ ବିସଖା । ୫ ।



( ଭଜ ହେ ଯୀଶୁର ନାମ ନିରବଧି—ବୃତ୍ତେ )

ଭଜରେ ଯୀଶୁର ନାମ ହରଦାଡ଼
ପିଣ୍ଡୁ ତୋର ପ୍ରାଣ ଯେବା ଯାଏଁ ନ ଛାଡ଼—ଘୋଷା ।
ମନେ ମନେ ଧ୍ୟାନ ଧର  କମନୀୟ ମୂରତି
ସରଳ ଅନ୍ତରେ ଡାକ ସେ ପ୍ରେମେ ବୁଡ଼ । ୧ ।
ଭୁଲି ଯାଅ ନାହିଁ କେବେ  ଭାଷି ବିଳାପନାବେ
ତାହାହେଲେ ନଷ୍ଟେ ଯିବୁ ସନ୍ତାପେ ପୋଡ଼ି । ୨ ।
ସେହୁ ଦୀନ-ଜନ-ସଖା  ମାଗ ତାରେ ରକ୍ଷା ।
ଭକ୍ତି ଭରେ ନମ୍ର ଚିତ୍ତେ ଚରଣେ ଗଡ଼ । ୩ ।
ଦେବେ ସେତେ ପ୍ରେମବାର  ପରାଣେ ତୋର ଭର
ଯିବ ସବୁ ଦୁଃଖ ହର ଭଜ ନ ଛାଡ଼ । ୪ ।



ରାଗ—ବସନ୍ତ                ତାଳ—ମିଶ୍ରରୂପ

ସେତ ଜଗତ ନାଥ ତୋ ଜୀବ ଜୀବନ
ଦେଜ ତାଙ୍କୁ ଯାଉଁ କେଉଁ ବନ ରେ । ପଦ ।
ସତ୍ୟ ଶିବ ନୋହି ସରସ ମୂରତି
ତୋର ପାଇଁ ସେନା ଦେଲେ ପ୍ରାଣ ରେ । ୧ ।
ଅନନ୍ତ ଜୀବନ ଅମୂଲ୍ୟ ରତନ
ଯାଚୁଛନ୍ତି ଧନ ସର୍ବ ଘେନ ରେ । ୨ ।



ରାଗ—ନୋହି ପରଜ

ପ୍ରଭୁ ଦରଶନ                କେଡ଼େ ମନୋରମ
ନୟନ—ପରାଣ—ହରା
ସରସ ସୁନ୍ଦର                ମଧୁର କୋମଳ
ଝରୁଥାଇ ନନ୍ଦ ଧାରା । ଘୋଷା ।
ପ୍ରେମ ମକରନ୍ଦ                ଝର ପାଦୁ ମନ୍ଦ
ବହୁଥାଇ ନିରନ୍ତରେ
ଭକ୍ତ ଗଣେ ରହି                ପାଦତଳେ ବସି
ପିଉଥାନ୍ତି ଆନନ୍ଦରେ ।
ଆଉ କେତେ ହସି                ଚରଣ ଆଉଁସି
ଦେଉଥାନ୍ତି କରତାଳ
ଥୋକେ ପୁଣି ତହୁଁ                ପଦରଜ ନେଇ
ଖେଳନ୍ତି ଯେ ପ୍ରଭୁ ଖେଳ । ୨ ।

ଆଉ ମାନେ ତହିଁ ପ୍ରଭୁ ଗୁଣ ଧ୍ୟାଇ
ଭାବରେ ପୁଣି ମଗନ
ଦେଇ ପାଶେ ମୋର ଥୋକାଏ ଆବର
କରନ୍ତି ସ୍ନେହ ସ୍ତୁତି ଗାନ । ୩ ।
ଜୟ ଜୟ ନାଦ କରି ସୁର ଭେଦ
ଉଠୁଥାଇ କେତେ ତହିଁ
ମନେ ପଡ଼ଗଲେ ସେହି କଥା ବେଳେ
ହଜି ଜ୍ଞାନ ଯାଏ କାହିଁ । ୪ ।

---

(କେଡ଼େ ମନୋରମ ସେ ସ୍ୱର୍ଗ ଭୁବନ—ବୃତ୍ତେ)
ଦେଖ ଦେଖ ମନ ସୁଖ-ଶାନ୍ତିଧାମ
ବିରାଜନ୍ତି ଯହିଁ ପତିତପରାଣ
ମୁଖରେ ତହିଁ ପ୍ରେମର ନିଶାଣ
କମ୍ପାଇ ମନେ ଇହ ପରଧାମ । ପଦ ।
ନିବସନ୍ତି ଯହିଁ ଅମରଗଣ
କରି ନିବେଦନ ସ୍ତୁତି ସମ୍ମାନ । ୧ ।
ଆଲୋକେ ତହିଁ ଭକତ ସୁଜନ
ନନ୍ଦନେ ମୋଦେ ଲଭନ୍ତି ଆରାମ । ୨ ।
ଶୁଭେ ନାହିଁ ତହିଁ କେବେ କ୍ରନ୍ଦନ
ଆନନ୍ଦ ରୋଳ ଉଠେ ଘନଘନ । ୩ ।
ଯହିଁ ତମ ଜରା-ରୋଗ-ମରଣ
ନ ପାଇ ଥାନ ଭଜନ୍ତି ବିରାମ । ୪ ।
ସେହି ଏକା ମୋର ଶାନ୍ତି ସଦନ
ମୋହଁବାରେ ସାଜ କଜ ଦମାନ । ୫ ।

## ରାଗ—ପରଜ

ବନ୍ଧୁ ପ୍ରେମ ଖଜା — ମହାମୋଦ ସଜା
ହୋଇଛି ଭବ ବଜାରେ
ଯୋଗ୍ୟ ପରେ ଯୋଗ୍ୟ — ବସିଛି ପସାଗ
ସଜ୍ଜନମାନେ ସଜା ରେ । ୧ ।
ବଡ଼ ଯାକ ଜାହିଁ — ବାଛିବାକୁ ତହିଁ
କାହାକୁ ବାଛିଲୁ ଭୁଲି
ବାଛୁଥିଲେ ଯେତେ — ଜାଣୁଥିବ ସେତେ
ବନ୍ଧୁତା ସରବ ଜାହିଁ । ୨ ।
ଲାଭ ତାର ଅଟେ — ଲଭିଲେ ଅନ୍ତରେ
ପାସୋରି ପାରିଲୁ ନାହିଁ
ବାୟୁ ପର ହୋଇ — କୁଳକୁ ଭୁଲାଇ
ବାଟ ଘାଟେ ଲୋଡ଼ୁ କାହିଁ । ୩ ।
କିଣିବାକୁ ଭଲେ — କଲେ ଇଚ୍ଛା କାହିଁ
ଆସ ଆସ ଶରତର
ବଣ୍ଟ ଗୁଡ଼ଆର — ବଜାର ବେପାର
ଜଗତୁଁ ତାହା ବାହାର । ୪ ।
ମନ-ମୁଣି ଫେଡ଼ — ହୃଦୟ କାଢ଼
ଯତନେ କର ବାହାର
ଥାଉଁ ଥାଉଁ ବେଳ — ଯାଉ ଆଗେ ଚାଲ
ପଛକୁ ନ ଅନା ଘୋର । ୫ ।
ଯାଉଁ ଯାଉଁ ପଥେ — ଗଲା ଥିବ ସାଥେ
କହୁ ନ କର ବହୁଧା

ତାହା ହେଲେ ବୃଥା ହେବ ସବୁ କଥା
ଯିବ ବୁଡ଼ି ଗୁଣ ଗ୍ରାମ । ୭ ।
ବୋଲ ଗୁରୁ ମାନ ଯାଅ ଝଟକନ
ସତ ପଥ ଅନୁସର
ଅନନ୍ତ ଜୀବନ ଲଭିବୁ ନଦାନ
ସୁଖେ ଯିବ ଘନ ଘର । ୮ ।



ରାଗ—ମାୟାମାଳବ ଗୌଡ଼ା ତାଳ—ମିଶ୍ର ରୂପ

କହ ମନ କିଏ ଜଗତ ପାବନ ?
କିସ ଦେଇ ମୁହିଁ ପୂଜିବ ଚରଣ । ପଦ ।
କାହା ପାଇଁ ମନ ଧରିବ ପରାଣ
କାହା ନାମ ଗାଇ ଯାପିବି ଜୀବନ । ୧ ।
କାହିବ ମୁଁ ଧନ ଗୁହିଁ କା ବଦନ
କିଏ ହେବ ମୋର ସୁଖର ସଦନ । ୨ ।
କିଏ ନେବ ମୋର କଲୁଷ ଜହର
କିଏ ପୁଣି ଦେବ ଅନନ୍ତ ଜୀବନ । ୩ ।
କହ ଏବେ ସେହୁ ଗୁରୁ ନାମ ଫେଇ
କରଯୋଡ଼ି ନତ ନମିବ ଚରଣ । ୪ ।



ରାଗ—ଖମାଜ                                   ତାଳ ଅଢ଼

( ନ ଭାଙ୍ଗରେ ସୁଲଙ୍ଗି—ବୃତ୍ତେ )

ମୂଢ଼ ମନ କପାଁ ତୁହି ଏତେ ଉଦାସୀନ
ମାଡ଼ି ଆସେ ମୃତ୍ୟୁ କରି ଘୋର ଗରଜନ—ପଦ ।
ବାହୁବଳ ନାହିଁ ଥରେ ପୁଣି ସେହି ଦିନ
ବନ୍ଧୁଯିବ ଯିବା ସତେ ସପନ ସମାନ । ୧ ।
ସନ୍ତରେ କେତେ ରଙ୍ଗ ଗଗନେ ସଦନ
ସନ୍ତୋଷେ ବଢ଼ିରୁ ତହିଁ ଉଡ଼ାଇ କେତନ । ୨ ।
ଭବେ ଜୀବନ-ସଡ଼କ ବଡ଼ ଅସମାନ
ଭେଟିବାକୁ ପଡେ ପଥେ କଣ୍ଟା-ଗୁଡା-ବଣ । ୩ ।
ଝଡ଼ ତୋଫାନରେ ଜଡ଼ ରହିଛି ଜୀବନ
ଝାଞ୍ଜି ବାତ କେତେ ପୁଣି ବନ୍ଧେ ଘନଘନ । ୪ ।
ବେଳ ଥାଉଁ ଥାଉଁ ହୁଅ ତୁହି ସାବଧାନ
ବୁଡ଼ି ବେଳ ଗଲେ ଦେଖି କରିବୁ ରୋଦନ । ୫ ।



ରାଗ—ଭୈରବୀ                                   ତାଳ—ରୂପକ

(ଅନୁଭବ ତ ପ୍ରଭୁ କାଳ ଯାକ ଗଲ ସରି—ବୃତ୍ତେ)

ହୋଇ ଉଷତ ଭଜ ପ୍ରଭୁ ନାମ ବୋଲି ନସତ
ଅନବରତରେ          ଜପି ପୀରିତରେ
ଭିତରୁ ପ୍ରକାଶ ଅସତ          —ପଦ—
ସନ୍ଥ ସହବାସ          ସରଳ ବିଶ୍ୱାସ
ଜନେ ପଶାଇ ଦେଇ ସତ

ଯାର ଦବାନଳ   ଶୋଷି ସୁଧାରସ
ଦୋହ୍ଦ ଜମିଛେ ନରସ ତ । ୧ ।
ମନ ନିରନ୍ତର   ମାତ ମନୋହର
ଯେନ ତାପହର ବାସ ତ
ପତିତ ପରାଣ   ପାଲଟିବ ଧନ୍ୟ
ଭଜିବ ଜୀବ ସରସ ତ । ୨ ।



ରାଗ—ପିଲୁ   ତାଳି—ରୂପକ

ମଧୁ ଗୀତ ବାଜେ ନା କି ଷଣେ କାନେ
ଜୀବନ ନୀରବ ହୁଅଇ ଉଷତ
ଶୁଣିଲେ ଗୀତ ଚରଣେ   —ପଦ—
ସେ ଅତି ଅଦ୍ଭୁତ   କଣି ଭକ୍ତ ଚିତ୍ତ
ବାଜଇ ମଧୁରେ ନିତ୍ୟ
ପରାଣ ଭିତରେ   ରନ୍ଧ୍ର ନିରନ୍ତରେ
ବୁହାଇ ଆନନ୍ଦ ସ୍ରୋତ । ୧ ।
ଦୁଃଖୀ ନିକଟରେ   ଦରିଦ୍ର କୁଟୀରେ
ରୋଗୀ ଶଯ୍ୟା ଶିୟରରେ
ମୂକର ଅନ୍ତରେ   ଅନ୍ଧ ଇଙ୍ଗିତରେ
ଶୁଭେ ସ୍ୱନ ଇଷିତରେ । ୨ ।
ଜନନୀର ଅଙ୍କେ   ଶିଶୁ କ୍ରନ୍ଦନ ମୁଖେ
ଯଉବନ ଉଦ୍ୟାନରେ
ଗୁଞ୍ଜରେ ମଞ୍ଜୁଳେ   ମୋହନ ମନ୍ତ୍ରରେ
ବିମୋହିତ କରି ନରେ । ୩ ।

ନାମ ବଶ୍ୟତାତ      ସ୍ୱଗ ପ୍ରୀତ ଗତ
ତାଳ ସତ୍ୟ ସନାତନ
ସେ ମଧୁର ଗୀତ      ମନରେ ବହତ
ଶୁଣ ଧାରେ ଡେ଼ର କାନ । ୪ ।



ରାଗ—ଖମାଜ      ତାଳ—ଅଦ୍ଧ

( ନ ଭୃଙ୍ଗରେ ଶୋଭଙ୍ଗୀ—ବୃତ୍ତେ )

ଭଜ ମନ ଜୟ ପ୍ରଭୁ ବୋଲି ରେ
ମରାଣ ପଣେ ମଳନ ହୃଦକୁ ଉଝାଳ ରେ । ପଦ ।
ଭବ ସୁଖ କୋଳେ ଖେଳ ବାଉ କ ମୂରଲୀ ରେ
ନୀଡବର ତାପହର ପଦକୁ ନ ଭାଳ ରେ ।୧।
ପ୍ରୀତି ପୁଷ୍ପ ହୃଦ-ବଲ୍ଲୀ ବୃନ୍ତରୁ ମଉଳ ରେ
ପଡ଼ିଲା କ ଭ୍ରାନ୍ତି ଘୂର୍ଣ୍ଣି ବାତ ଘାତେ ଝଳ ରେ ।୨।
ଭକ୍ତି ଉତ୍ସ ତର୍କ ସଇକତେ କ୍ଷଣେ ଗଳରେ
ହୀନ ଦଶା ଭଜିଲା କ ଜଡ଼ତାରେ ମଳ ରେ ।୩।
ବଶ୍ୱାସ ମାନସ କନ୍ଦରରୁ କେଣେ ଛଳି ରେ
ଗଲା କ ସେ ଭକ୍ତି ତୋତେ ମାରି କରତାଳରେ ।୪।
ଭରସା ଭେଳାର କୋଳେ ବସି ଧୀରେ ଖେଳ ରେ
ଗାଇ ନାମ ଲହରୀ ଯା ତଟ ବେଳାବେଳି ରେ ।୫।



ରାଗ—ମହ୍ଵନା                                        ତାଳ—ଅଡ଼ତାଳି

ଦିନେ ଯାତ୍ରା ଦେଖିଲାନ୍ତି ନେତ୍ର,
ଦଣ୍ଡେ ଯାଉନ ମନୁ ସେ ଚିତ୍ର,
ଦଇବ-ରୀତି ଘଟେ ବଡ ବିଚିତ୍ର । ଘୋଷା ।

ଦୂରରୁ ଦିଶୁଥିଲା          ଦେହେ ରଜତ ଦୋଳା
ଦୋହଳନ୍ତିକ ମାଳା ମଣ୍ଡି ସୁଗାତ୍ର । ୧ ।
ଦୟା ମାୟାରେ ପୂରି          ଦରଶାଇ ମାଧୁରୀ
ଦରପ ଦେଲା ଚୂରି ରନ୍ଧ୍ର ଅନ୍ୟତ୍ର । ୨ ।
ଦେଖି ନ ଦେଖିଲାନ୍ତି          ଦରଦ ଆଖି ଦୋ'ନ୍ତି
ଦୋଷ ତା ଗଲା କେମନ୍ତି ହେଲା ପବିତ୍ର । ୩ ।
ଦୁରିତ ଦୁଃଖହରା          ଦୁଃଖୀ ଦିନ ପସରା
ଦେଲେ ପୀରତି-ଧାରା ତାଳ ସର୍ବତ୍ର । ୪ ।



ରାଗ ଖମାଜ                                        ତାଳ—ଅଢ଼

( ଭକ୍ତମନ ହରିପ୍ରାଣ ପ୍ରେୟସୀ ଶ୍ରୀମତୀଙ୍କ—କୃତେ )

ମୋର ବାପଦାଦରେ ପୁତ୍ର ଅଛି କୋଟିଶିରୀ,
ଭବ ବଜାରେ କିପାଇଁ ବନିବ ଭିକାରୀ । ପଦ ।

ଯେତେ ଯେ ଦେଲେ ବର୍ତ୍ତର          ହେବ କସ ତାର ସର
ଆଶା କି ମେଣ୍ଟିବ କର ଯିବ ଯିବା ଦ୍ୱାର । ୧ ।
ବାଛି ବାଛି ମନ କର          ଗନ୍ତାଧରୁ ମାଣେ ଧର'
ଦେବ ଶତଗୁଣେ ଭରି ସୁଧାଧାର ଦ୍ୱାର । ୨ ।

ବାପ ସେହୁ ଦୂରାପୂର
ଥାଏ ନିତ ଏକା ପର
ପରତ ମିନା ନ କର ଭଜ ଦୁରାଗ୍ରହୀ । ୩ ।
ଶଶ୍ୱାସରେ ଅନ୍ନ କର
ମାଗ ବନ୍ଧୁନାମ ଧର
ତେବେ ନିଶ୍ଚେ ପ୍ରାଣେ ଭର ଅମିୟ-ମାଧୁରୀ । ୪ ।



ରାଗ—ଝିଞ୍ଜୋଟି
ତାଳ—ମିଶ୍ରି ରୂପ

ମନ ମଜ୍ଜ ପ୍ରଭୁ ପ୍ରେମ ସାଗରେ । ପଦ ।
ନାହିଁ ନାହିଁ ଜନପୁରେ
କୂଳ ଅନ୍ତ ତାର କିରେ
ଖେଳେ ସଚରାଚର ବ୍ରହ୍ମାଣ୍ଡରେ । ୧ ।
ଘୂରି ଘୂରି ଅନୁକ୍ଷଣେ
ଧାବନ୍ତି ସରି ସମାନେ
ଆବୋରେ ଜୀବନ ମୃଦୁ ମନ୍ଦରେ । ୨ ।
ନାଚ ନାଚ ନିତ ନିତ
ମନେ ମନେ କରି ଗୀତ
ସିଞ୍ଚେ ସ୍ନେହ ସୁଧାରସ ଅନ୍ତରେ । ୩ ।
ପରମ ପୀୟୂଷ ବାରି
ଯେ ଚାଖେ ସେ ମିନା ବାରି
ଅପରେ ଆକାଶ କୁସୁମ ସରିରେ । ୪ ।
ପ୍ରେମାମୃତ ପାନେ ରତ
ବଜାଇଲେ ଅବିରତ
ଭବ ଝାଞ୍ଜି ତାପୁଁ ଦେବୁ ନାହିଁରେ । ୫ ।



# ଦୋଳିଗୀତ

ଆସରେ ଆସ ପିଲାଏ ହସି
ଦେଖିବ ମରା ସରଗ ଶଶୀ । ପଦ ।
ଆସି ଅଳନ୍ଦ ଉପରୁ ଖସି
ଦେଖିଲେ ମନ ଉଠେ ଉଲୁସି । ୧ ।
ଗୋଲୁ ଗୁଡ଼ାଳେ ରୂପେ ଝଲସି
ଶୋଇ ଅଛନ୍ତି ଶୋଭା ବିକାଶି । । ୨ ।
ପାଶେ ଜନନୀ ବସି ଆଉଁସି
ନନ୍ଦନ୍ତ ମୁଖ ଦେଖ ତୁ ହସି । ୩ ।
ମୁରୁବ ବିଗୁ ପଣ୍ଡିତ ରାଶି
ଆଣି ଅଳଙ୍କ ଭେଟି ମନାସି । ୪ ।
ବଲ ମାଳରୁ ଇଙ୍ଗିତେ ଆସି
ମେଷ ପାଳକେ ତଟେ ତଳାସି । ୫ ।
ସୁନା ପୁଅ ମୋ ଉଠରେ ବସି
ଗୃହେଣ୍ଡ ପଳାଅ ସନ୍ତାପ ନାଶି । ୬ ।



## ଦୋଳ ଗୀତ

ଗାଅରେ ମୋଦେ ପରମ ଗୀତ
ଜୟ ଶବଦେ ପୂରୁ ଜଗତ ।
ସକଳ କଣ୍ଠୁ ଉଠୁ ଲଳିତ
ମୃଦୁ ମଧୁର ତାନ ସହିତ ।

ଜଗତ ଜନେ ହୋଇ ମୋହିତ
ଲୋଟନ୍ତୁ ପାଦେ ପିଇ ଅମୃତ ।
ହସ୍ତ ଗଗନ ଜାଣି ଜୀମୂତ
ବର୍ଷୁ ଆଶିଷ ଲୋଡ଼କ ବହୁତ ।
ନାଚୁ ଧରାଣ ହୋଇ ଉଷତ
ହେଉ ନିପାତ ଭବୁ ଦୁରିତ ।



ରାଗ—ବସନ୍ତ                                    ତାଳ—ଏକ

ପ୍ରଭୁ ଗୁଣ ଗାଇ                    କୂଳ ବାଣ୍ଟେ ଯାଇ
ଭାଇ ଭାଇ ହୋଇ ଲୁଣ୍ଠି
ସାଗର ଲହରୀ                    ସମ ଉଦଗାରି
ଉଠ କୋହିଁ ଲକ୍ଷ ଲକ୍ଷ । ୧ ।
ବେଳା ବେଳି ଏବେ                    ଭକତ ସରବେ
ଜାଗି ଉଠ ପ୍ରାଣପଣେ
ଅଣ୍ଟା ଭିଡ଼ ଠିଆ                    ହୁଅ ଛାଡ଼ ମାୟା
ଜଣକ ପଛରେ ଜଣେ । ୨ ।
ଆସୁଅଛି ମାଡ଼ି                    ଅକ ଦେଇ ଧାଡ଼ି
ହୋଇ କେତେ ତାନମାନ
ନ ଭଜି ହତାଶ                    ଦେଖାଅ ସାହସ
ଜପି ନନ୍ଦ ବନ୍ଧୁ ନାମ । ୩ ।
ମୋହଜାଲେ ପଡ଼ି                    କପାଇଁ କରିଛ
ହେଉ ବୃଥା ଛଟପଟ

ସ୍ୱାର୍ଥ ପଙ୍କ ରୁଦ୍ଧ          ବେଗେ ଆସ ଧାଇଁ
ନ ମାଡ଼ ପୁଣି ସେ ବାଟ । ୪ ।
ଧନ ଜନ ମାନ          ସବୁ ଝୁଠା ଜାଣ
ନୁହେ ପୁଣି କେବେ ଚର
ଅଢ଼ାଇ-ଦିନିଆ          ଏ ଛାର ଦୁନିଆ
କ୍ଷଣେ ହେବ ଛାରଖାର । ୫ ।
ଧରମ-ରତନ          କର ଉପାର୍ଜ୍ଜନ
ବଞ୍ଚିଥିବୁ ଯେତେ କାଳ
ଭବ ହାଟ ମେଳା          ସରିଲେ ଏ ବେଳା
ଲଭିବୁ ସୁଖ ସକଳ । ୬ ।



## ଭଜନ

ରାଗ—କାମୋଦ          ଅଦଢ଼ାଳ

( ରାଧାକୃଷ୍ଣ ଭଜରେ—ସଦାମନ - ବୃନ୍ଦେ )

ରାଧାନାମ ଭଜରେ ମୂଢ଼ମନ—ଯୋଷା
ଅହିଂସା ରୀତି ଆଚରି ହିଂସାକୁ ଦଳଜ ରେ
ହିଂସାନଳ ଦେବ ଜାଳି ହୃଦୟ ବରଜ ରେ
ଯମ ପୁଣି ତାଙ୍କୁ ଟାଣି ନେବ ପ୍ରାଣ ସଜରେ । ୧ ।
ମୈତ୍ରୀ ମନ୍ତ୍ର ଜପି ସୁଖ ଶ୍ରୀ ସରଜରେ
ଜୀବନ ସରେ ଫୁଟିବ ଆନନ୍ଦ ସରୋଜରେ
ସେବାର ତରେ ଛୁଟିବ ପରାଣ ସହଜରେ । ୨ ।

ସତ ପଥ ଅନୁସର ଜଗତେ ଷରାଜରେ
ଅସତ ପଥରେ ଗଲେ ତୁଳିବ ତରାଜ ର
କ ର ମନା ଲୁଣ୍ଡି ଯା'ନା ପାପର କରଜରେ ।୩।
ଭକତଭଜରେ ପରମ ପାଦ ଜଳଜ ପୁଞ୍ଜ ରେ
ଭେଟି ଦେଇ ମନ ପ୍ରାଣ ବନ୍ଧୁ ପଦାମ୍ବୁଜରେ
ଭୂତଳେ ରାଜିବ ସଦେ ସରଗ ରାଇଜରେ । ୪ ।



ରାଗ—ଦେଶ ମହ୍ଲାର [illegible] ।

ପାପୋର ନୁହେଁ ସେ ସେ ସ୍ୱ·ରିତ ମା
ଯେଣେ ଗଲେ ତେଣେ ପଡ଼େ ମନେକି ମା । ଧ୍ରୁବ ।
ପ୍ରାଣେ ଜାଗି ନବ ମଞ୍ଜୁଳ ମୂରତ
ଢାଳି ଦଏ ଶାନ୍ତ ତଡ଼ ମନୁ ଭ୍ରାନ୍ତ ମା । ୧ ।
ଅରକ୍ଷିତେ ଲେଶେ ଲୁକ୍କ ନ ଗଣି ସେ
ଦୀନ ହୀନ ଜନେ ସ୍ନେହେ ତୋଷିଲା ମା । ୨ ।
ଧନେ ହେଲେ ଚଳ ଦେଲା ନାହିଁ ଗାଳି
ଯେତେ ଯେ ତା ନା'ମେ ନିନ୍ଦା ରଚିଲା ମା । ୩ ।
ମରଣ ବେଦନା ଭୋଗି ନିଜେ ଯିବା
ଭାଙ୍ଗି ପକାଇଲା ତା ଗର୍ବ ଗାରିମା । ୪ ।
ଉଡ଼େ ଯେଣ୍ଡୁ ବାନା ଏବେ ଥରେ ଅନା
ନ ପାଏ ଦେବାକୁ ଉଚିତ ଉପମା । ୫ ।



ରାଗ—ଅନନ୍ଦ ଭୈରବୀ ତାଳ—ଏକ

( ଅଳି କେଶବ କୁଞ୍ଜରୁ ଅଇଲ କି -- ବୃତ୍ତ )

ଆଜ ମନରୁ ମୁରୁଛି ରହିଲୁ କି ?
ଦୀନ ଜନ ସଖାଙ୍କୁ ଭୁଲିଲୁ କି ? —ପଦ ।

କାହା ପାଲେ ପଡ଼ିନ କି କେତେ ଅନାଇ କେଣିକି
ଆରତ ପ୍ରାଣପତିଙ୍କୁ ତେଜିଲୁ କି ? । ୧ ।

କର୍ଣ୍ଣେ ମନ୍ତ୍ର କିଏ ଦେଲା କଣି ମନ କେ ସେ ନେଲା
ବରଜ ସୁନ୍ଦରେ ଆନେ ମଜ୍ଜିଲୁ କି ? । ୨ ।

ସେ ତ ବଡ଼ ଦଗାଦାର ସତେ ଭଗାଇ ଭବର
(ଯାହା) ସଙ୍ଗେ ତୁହି ମେଳ ବାନ୍ଧିଲୁ କି । ୩ ।

ମୋହନ ମନ୍ତ୍ରର ତାର ମୋହ ଜର ଜର ଶର
ତାପରେ ତୁହି ଝାଉଁଳି ପଡ଼ିଲୁ କି । ୪ ।

କାଳ ବଳ ତୋ ଘଟିଲା କାମ କାମନା ମେଣ୍ଟିଲା
ଏବେ ହେଲେ ଶ୍ରୀନାମ ନ ଧରିଲୁ କି । ୫ ।



ରାଗ—ମହ୍ଵନା ତାଳ—ମିଶ୍ରି ରୂପ

ଭଜ ପ୍ରଭୁ ସୁଧା ନାମ ଧନ ରଖରେ ବାଉଳ ମନ । ପଦ ।

ସଂସାର ସମ୍ପତ୍ତି ସୁଖେ ଗଲେ ମାତି
ଜୀବନର ଶକ୍ତି ଯିବ ଲୁଚି ଅନ୍ଧ ରେ । ୧ ।

ତୁଟିବ ନାହିଁ କି ଟଳେ ଚଉଁ ଭ୍ରାନ୍ତି
ଉତ୍ସୁକବ ସିନା ଅନ୍ତରେ ଅଶାନ୍ତି ରେ । ୨ ।

ବୃଥା ହୋଇଯିବ          ବଳାସ ବଭବ
ବକଳେ କାନ୍ଦିବୁ ବାହୁନ ସମ୍ପତ୍ତି ରେ । ୩ ।
ଦୋହଲି ମଞ୍ଜୁଳେ          ହୃଦ କୁଞ୍ଜତଳେ
ନାମଧର ଡ଼ାକେ କେତେ ଦନ୍ ରାତରେ । ୪ ।
ଉଡ଼ ଯାଅ ମନ          ଯେଉଁ କୁଞ୍ଜେ ଧନ
ପିଇ ମଧୁ ନାମ ଲୋଟି ତହିଁ ଶାନ୍ତିରେ ।୫।



ରାଗ – ଖଉଢ଼ିରପ୍ରିୟା          ତାଳ — ଅଦ୍ଧ

ଭୁଲନା ଭୁଲନା ମନ ତାଙ୍କୁ ନିମେଷେ
ଦେଲେ ଯେ ପରାଣ ତୋର ହସ୍ତେ ହରଷେ । ଘୋ ।
ଭୁଲି ନାହିଁ ତୋତେ କ୍ଷଣେ ହେଲେ ବରଷେ
ପାସୋର ତାଙ୍କୁ ଦେଉ କପର କଡ଼ କଲୁଷେ । ୧ ।
ସହସ୍ର ସହସ୍ର ରୋଗୀ ପାପୀ ଉଲ୍ଲାସେ
ଲଭୁ ଥିଲେ ମୁକ୍ତି ଯାହାର ପୀୟୂଷ ପରଶେ । ୨ ।
ଜଳାଞ୍ଜଳି ଦେଇ ଭବ ସୁଖ ବଳାସେ
ବତରିଲେ କୀର୍ତ୍ତି ମୟୂଖ ଯେ ଦେଶେ ବଦେଶେ ।୩।
ପରାଣ ଗଲାବେଳେ ନ ଭୁଲି ପରାସେ
ଦେଲେ ଯେ କ୍ଷମା ବଇରି ଜନେ ଲୋଟି କୁରୁଶେ ।୪।



# ଭଜନ

ଭଜ ଭଜ ମନ ଯୀଶୁ ନାମ
ଭଜିଲେ ପାଇବୁ ମୁକତ ଧାମ । ଘୋଷା ।
ନାହିଁ କେହି ତାଙ୍କ ସମ ଅଦ୍ୱିତୀୟ ପରମଂବ୍ରହ୍ମ । ୧ ।
ଯୋଗୀ ତପୀ ମୁନି ଜନ ଜପନ୍ତି ନିତ ଯାର ନାମ । ୨ ।
ପାପ ତାପ ନାଶି ଧନ ବରଷେ ଅନ୍ତରେ ଆରାମ । ୩ ।
ସୁଖ ଶାନ୍ତି ଭକ୍ତି ଜ୍ଞାନ ବଢରେ ପ୍ରାଣେ ଅନୁପମ । ୪ ।
ଭଜିଲେ ନିରତେ ନାମ ନିଶ୍ଚେ ଲଭିବୁ ଶାନ୍ତିଧାମ । ୫ ।



(ଦୟାଲ ଯୀଶୁର ପ୍ରେମ ମାହେଁ ଗୋ—ବୃତ୍ତେ)

ମୋହନ ଯୀଶୁ ପ୍ରେମର ରୂପ ଗୋ ! ଯେ ଥରେ ଦେଖିଛି
(ସେତ) ମନୁ କି ପାରେ ସେ ଭୁଲୁଛି ? ଧ୍ରୁବ ।
ଯୀଶୁ 'ନାମ' ବେଣୁ-ଧ୍ୱନି ଯା' କାନେ ବାଜିଛି
(ଭଲା) ଆତ୍ମହରା ହୋଇ ତରତରେ ପଛରେ ଧାଇଁଛି ।୧।
ସେହି ଦିବ୍ୟ ମୁଖ କାନ୍ତି ଯେ ଥରେ ଦେଖିଛି
(ସେହି) ଇହ ସୁଖ ପରିହରି ସତେ ସନ୍ୟାସୀ ସାଜିଛି । ୨ ।
ଯୀଶୁ ପ୍ରେମ ସୁଧା ସ୍ୱର୍ଗ ଯେ ଥରେ ଲଭିଛି
(କେତେ) ପ୍ରେମେ ଅହରହ ମାତି ଆନେ ପ୍ରେମେ ମତାଉଛି
ମଜ୍ଜ ସେହି ପ୍ରେମ-ରସେ ମନେ ନ ପାଅ କଷ୍ଟ
(ନିଶ୍ଚେ) ତୋର ପାପକଳା ପଲକରେ ଯିବ ମୂଳରୁ ପୋଛି ।



( ସବୁ ସୁଖକର ସନ୍ତାପ ପାସୋରି—ବୃନ୍ଦେ )

ନବ ଜନ୍ମ କାଳେ ବର୍ଷେ ସାଧୁ ମେଳେ
ବିଶ୍ୱାସ-ଭକ୍ତି ଅନ୍ତରେ
ସରଳ ପରାଣେ ସ୍ୱଲୀଳ ତାନେ
ବାଇବ ବଂଶୀ ସେ ନାଁରେ । ଧ୍ରୁବ ।

ପ୍ରଭାତର ବାତେ ପ୍ରଫୁଲ୍ଲିତ ଚିତ୍ତେ
ଜନ୍ମ-ବନୋଦଧି ଗୁଣେ ହୋଇ ବାୟା
ପ୍ରୀତି ପୁଷ୍ପମାଳେ ଅରପି ଗଳାରେ
ନାଚିବ ଭକତଭାବରେ । ୧ ।

ମଧ୍ୟାହ୍ନ ଆତପେ ଭବ ଝଞ୍ଜାତାପେ
ପରାଣ କାନ୍ଦିଲି ଗଲେ ଝାଉଁଳି
ପ୍ରେମ ଅଶ୍ରୁ ନୀରେ ଭକ୍ତି ପୀଠ ପରେ
ଧୋଇବ ଥାପି ପୟରେ । ୨ ।

ସନ୍ଧ୍ୟା ଆଗମନେ ପାପତମ-ଗଣେ
ଦେଖିଲେ ଦେଖା ଘନେ ଦେଇ ଭୟ ମନେ
ଫୁଙ୍କି ଦେବି ଥରେ ସେ ନାମ ମନ୍ତ୍ରରେ
ଯିବ ଉଡ଼ି ତାପ ଡ଼ରେ । ୩ ।

ଜୀବନ ପ୍ରାଙ୍ଗଣେ ନ ହଟି ସଂଗ୍ରାମେ
ସମ୍ପଦେ ବିପଦେ ବାନ୍ଧିବ ବକ୍ଷେ ସେ
ସେବିବ କଦାନେ ଓଳଗି ଚରଣେ
ଜନ୍ମ କାଳେ ଶରଧାରେ । ୪ ।



( ମନ ପ୍ରାଣ କେବଳ ଯୀଶୁ ଯୀଶୁ—ବୃତ୍ତେ )

ମୋର ସେହ୍ନ ପ୍ରାଣସାଇଁ ଗଲେ କାହିଁ ଛାଡ଼ି ଦେଇ
(ମହୁଁ) କ୍ଷଣେ ଧ୍ୟାୟି କ୍ଷଣେ ଗାଇ ଖୋଜେ ହୋଇ ବାଇ ।
ପ୍ରାଣେ ସୁଖ ଶାନ୍ତି ନାହିଁ କାହି ଡାକେ ନାହ ନାହ
(ଆହା) କାଟେ ଦଧ ଝୁରି ଝୁରି ଭବ-ଭଉଁରରେ ଘୂରି ।୧।
ଲୁକ ଲୁଲୁଅଛି ବୈରି ନାଜ ବଳ କଳ ଦେଇ
(ସେହ୍ନ) କୋପେ ଘରାନ୍ତି ଅନାଇ କହେ 'ନେବ ଧରାଇ' ।
ବଳ ମୋର ପାଉନାହିଁ ଭବ ରଙ୍ଗେ ଡାଲୁ ଦହ୍ନ
(ସଦା) ଦଳ ବଳେ ରଣ-ଶାୟୀ କରି ହେବ ବିଜୟୀ ।୩।
ଦଅ ବଳ ଦେଖା ଦେଇ ଯାଉ ସେ ଭୟେ ପଳାଇ
(ପ୍ରଭୁ) ଆସୁ ଥିବେ ସୁଖ ଉଇ ଯାଉ ଦୁଃଖ ଉଡ଼େଇ ।୪।



ରାଗ—କାମୋଦ  ତାଳ—ଅଠ

( ତେଲିଙ୍ଗ—ଅନ କାଲମୃଲ ଯୁନା ଛନ୍ଦୋବାନ ବୃତ୍ତେ )

ସେତ ବିଶ୍ୱପ୍ରାଣ ଶାନ୍ତିନିକେତନ ପତିତଜନ-ମନମୋହନ
ଜଗତର ପତି ଅଗତିର ଗତି ନମ ପାଦେ ନିତି ଭଜ ମନ ।
। ପଦ ।
ସେହ୍ନ ପ୍ରେମେ ମାତି ଗୁଣି ଦିନରାତି କରି ଭକ୍ତି ଲଭି ମୁକ୍ତି
ପାଇ ନବ ଶକ୍ତି ନିବାରି କୁମତି ତଡ଼ି ଜଗତୁ ଯେତେ ଦୁର୍ନୀତି
ପ୍ରେମ ସୁଧା କଣା କରେ ଜଗଜଣା ଦେଇ ଶାନ୍ତ ଅଗଣା
ଅପୂର୍ବ ମହିମା ପାପିଷ୍ଠ ଉଦ୍ଧାରଣା କାହିଁ [illegible] ।୧।

ସର୍ବେ ହୋଇ ରୁଣ୍ଡ ହୋନ୍ତୁ ଲଣ୍ଡଭଣ୍ଡ ଶତ୍ରୁଗଣେ ମହୀମଣ୍ଡ
ପ୍ରେମେ ବର ଦଣ୍ଡ ନଇ ନଜ ମୁଣ୍ଡ ସେବ ହରଷେ ହୋନ୍ତୁ
ଉଦ୍ଦଣ୍ଡ
ନମ୍ରତାକୁ ଭଜ ଅହଂକାର ତେଜ ଶତ୍ରୁ ବାକ୍ୟେ ମନ ମାଜ
ନୀତି ନେତେ ସାଜ, ସତ୍ୟେ ପ୍ରାଣ ରଞ୍ଜି, ସୁଧାର ସଦା
ଜୀବନ । ୬ ।



ରାଗ—ହରକାମ୍ବୋଧ ତାଳ—ମଧ୍ୟରୂପ

ହୃଅ ସଜ ଆଜ ବରଜ ବଳାସ ସାଜ । ପଦ ।
ଆସିଛନ୍ତି ପରା ଆନନ୍ଦ ପସରା
ପର ମଥାରେ କଣ୍ଟାର ତାଜ । ୧ ।
ପ୍ରୀତି ସୁଧା ଧାରା ପସାର ଅପରା
ଦେବାକୁ ଭବେ ତାପୀର ଖୋଜ । ୨ ।
ପାପ-ତାପ-ହରା ପକାଅନ୍ତି ଧରା
ଲୋକେ ଗୁପତ ଦୁରିତ ବୃଜ । ୩ ।
ଆସେ ମନ-ଫେରା ଆଦର ନାହାରା
ଲଭନ୍ତି ସୁଖ ଆନନ୍ଦ ତେଜ । ୪ ।
ସେ ତ ଶତ୍ରୁ ଘେରା ସର୍ଗେ ଭେଟ ହୋଇ
ହୋଇଲେ ନଷ୍ଟେ ପାଇବୁ ଲାଜ । ୫ ।



ରାଗ—କେଦାର ଚାଟେଳୀ　　　　ତାଳ—ଝୁଲା

ହାଏ ଅଭାବ ବଦଳାଇ ସ୍ୱଭାବ
କରେ କେଡ଼େ ଚୁନା ମଣିଷ ଗରବ ନଷ୍ଟ ହେ । ଘୋଷା ।
ସନ୍ଧ ନପାଇ ଅଧିକ ତାର ଦାଉ
ଭୋଗନ୍ତି ଜୀବନେ କଷ୍ଟ ହାଉଯାଉ । ୧ ।
ପ୍ରସାଦ ତାହାର ବଡ଼ ଭୟଙ୍କର
ଅନୁଭବ ଯେନା ଜାଣେ ଲୋଇ ତାର । ୨ ।
ପରତେ ମିଶାଇ ବିଷାଦ-ଗରଳ
ବସୁଧାର ଜଳ କରେ ଟଳମଳ । ୩ ।
ସମୟେ ରଚଇ ଜୀବନ ତରଙ୍ଗ
ବେଳେ ଧୁଣି ତାଲୁ କରେ ଛିନ୍ନଭିନ୍ନ । ୪ ।
ଦେଖିଲେ ନାକଲୁ ପ୍ରଭୁ ପୟରେ ଝାକ
ନ ପାରିବ କେବେ ଏହାର ମୁଣ୍ଡ ଟେକ । ୫ ।



ରାଗ—କୁମ୍ଭ କେଦାର　　　　ତାଳ—ଅଠତାଳୀ ଝୁଲା

ଦେଖନ୍ତୁ ପରା ଜୀବନ ଦଶା
ଭାଙ୍ଗୁ [illegible] ତାହିଁକ । ଘୋଷା ।
ଭାଳିକେଳି ଭଲା ଦେହଦ ଆଉ ଜସ
ଦେଇ ଯାଏ ପ୍ରେମ-ସରସ ରାସ । ୧ ।
ମେଲ ହୃଦୟ ଦୁଆର ଖରତ
ଭଜ ଏଥର ନାମ ପ୍ରେମାଳିତ । ୨ ।

ଭକତ କୁସୁମ ମାଳା ସେ ଗଲେ
ଗଳାଇ ନାଚ ଚଳି ବନ୍ଦୋଳରେ ।୩।
ଲେପି ମୋଦେ ଯାଦେ ପ୍ରୀତି ଚନ୍ଦନ
ଆନନରେ କର ମହିମା ଗାନ ।୪।
ଭାବନା ତୋହର ଉଦ୍ଧବ କାହ୍ନିଁ
କ୍ଷଣେ ପଡ଼ିବେ ଧରା ଜୀବନ ସାଇଁ ।୫।



ରାଗ - କୁସୁମ କେଦାର — ତାଳ - ଝୁଲା

ପ୍ରାର୍ଥନା ଜୀବନ ସମ୍ବଳ କରନ
ଜୀବନ କେତେ ଉଜ୍ଜ୍ୱଳ ।ଘୋଷା।
ତାପୀ ପରାଣ ଶାନ୍ତି-ଜଳ, ବିଶ୍ୱାସ ମୂଳେ ଭାଲେ ବଳ
ସାଧକ ଜନର ସେହି କରବାଳ
ଦଳନ୍ତି ଜାଣ ନିଜ ଅମୋଘ ଶର ।୧।
ପାପ ମୋଚନେ ବଳିୟାର ରୋଗ ହରଣେ ମନ୍ତ୍ର ସାର
ଦୁଃଖ ଦାଉ ହରବାରେ ଧୁରନ୍ଧର
ସୁଖ ଦେବାରେ ଅକ୍ଷୟ ଭଣ୍ଡାର ।୨।
ମେଲାଇ ସରଗ ଦୁଆର ଝରାଇ ଆଣେ ସୁଧା ଧାର
ପୁଲକେ ନାଚଇ ପରାଣ ଭକ୍ତର
ଲଭି ଅଶୀଷ ଆନନ୍ଦ ଅପାର ।୩।
ଅନୁସରିଲେ ଚିରକାଳ ଜୀବନ ହୋଇବ ସଫଳ
ଯିବ ଭାଜି ଶୟତାନ କଳାକଳ
ଜନ୍ମିବ ଫଳିବ ଫଳ ମଙ୍ଗଳ ।୪।



( ଛଳ ଅଣି ଯାଇ କାଳ କାଳିନ୍ଧ ମୂର୍ଚ୍ଛାକୁ—ବୁଟେଭ ):

ସୁର-ନର-ନିତ୍ୟ-ବନ୍ଦ୍ୟ ଈଶ୍ୱର-ନନ୍ଦନ
ମର୍ତ୍ତ୍ୟେ ହୋଇଲେ ଜନମ ରେ । (ସୁମନ) ।
ଜୀବର ଜୀବନ ରେ । (ସୁମନ) ।୧।

ମାନବ କି ଭଗବାନ ସନ୍ଦେହେ ନ ବାଣି
ଲୋକେ ଗଲେ ଧାବଣି ରେ । (ସୁମନ)
ଗଲା ଲୁଣ୍ଠି ସବୁ ରେ । (ସୁମନ) । ୨ ।

ଘରେ ଘରେ ବୋଲିଗଲା ସୁଖର ସମ୍ବାଦ
ଘନ ଘନ ଜୟ ନାଦ ରେ । (ସୁମନ)
ଜନମାଇ ମୋଦ ରେ । (ସୁମନ) । ୩ ।

ପରେ ପରେ ସୁଧୀ ବୃନ୍ଦ ପ୍ରୀତି ପଛୁଁ ଯାଇ
ଧନ୍ୟ ଧନ୍ୟ ଶବ୍ଦ ଗାଇ ରେ । (ସୁମନ)
ଦେଖିଲେ ନାଉଁଛାଇ ରେ (ସୁମନ) । ୪ ।

ପଲ ପଲ ମେଷ ପାଳେ ଯୂଥଙ୍କ ଉର୍ଦ୍ଦିରେ
ଡର ଜୟ ଧାଇଁ କେତେ ରେ । (ସୁମନ)
ପୂଜିଲେ ତାଙ୍କରେ ରେ । (ସୁମନ) । ୫ ।

ବନୁ ବନୁ ମାତା କୋଳେ ବସି ହେଲେ ଗୁଣୀ
ଖରବ ଖରବ ଜାଣି ରେ । (ସୁମନ)
ନ ଥିଲା କି ଜାଣି ରେ । (ସୁମନ) । ୬ ।

ଗୃହୁଁ ଗୃହୁଁ ଯଶ ବାସ ସୌରଭେ ଚହଟି
ଛନ୍ନ ଛନ୍ନ ଗଲା ରଟି ରେ (ସୁମନ)
ଶନ୍ଧୁ ଗଲା ଫାଟି ରେ । (ସୁମନ) । ୭ ।

ପୁଣ୍ୟ ବଳ ପୁଣ୍ୟକାଳ ହୋଇ ଏକ ମୂଳ
ଶତେ ଶତେ ନିର୍ମୂଳ ରେ । (ସୁମନ)
କଲା ଖଳ ଦଳ ରେ । (ସୁମନ) । ୮ ।

ଉଙ୍କି ଉଙ୍କି ଦେଖ ଜାନ ଯାଜକଙ୍କ କଳାପ
ଶୁଣୁ ଶୁଣୁ ହୋଇ ଲୋପ ରେ (ସୁମନ)
ମଳାଧିଲେ ପାପ ରେ । (ସୁମନ) । ୯ ।

ଶତ ଶତ ଦୀନ ହୀନ ଜନେ ଯେଣ୍ଡୁ ଗୁହ୍ନି
ହସି ହସି ଜନେ ବାନ୍ଧୁ ରେ । (ସୁମନ)
କାହିଁ ଶୁଣା ନାହିଁ ରେ । (ସୁମନ) । ୧୦ ।

ଶତ୍ରୁ ତପ୍ତ ଭ୍ରାନ୍ତ ହେଲେ ସରବେ ନୃପତି
ସଙ୍ଗେ ସଙ୍ଗେ ଲକ୍ଷି ହତ ରେ । (ସୁମନ)
ଲୋକେ ହେଲେ ମୃତ ରେ । (ସୁମନ) । ୧୧ ।

'ସରଗ ଶକ୍ତି' ଙ୍କ ଶାକ୍ତ ଶକ୍ତି ବୋଲି କେତେ
ଭାଳି ଭାଳି ପଡ଼ି ଖୋଜେ ରେ । (ସୁମନ)
ହେଲେ ଦୋଷୀ କେତେ ଯେ (ସୁମନ) । ୧୨ ।

ଆସୁ ଆସୁ ସମୟ ହେଲା ପ୍ରତିକୂଳ
ଦଳ ଦଳ ମାନ କୂଳ ରେ (ସୁମନ)
ହେଲେ ପରିବଳ ରେ (ସୁମନ) । ୧୩ ।

ଦଣାଦାର ଶିଷ୍ୟ ସହ କଲ କୁନ୍ଦାଳ
ପେଟର ହୋଇ ରାତି ରେ (ସୁମନ)
ଧରିହେଲେ ମାତ ରେ (ସୁମନ) । ୧୪ ।

ନାହିଁ ନାହିଁ କଥିଲା ତ ଦୋଷ ବୋଲି ତଳେ
ମିଛେ ମିଛେ ଲଢି ବଳେ ରେ (ସୁମନ)
ଦୋଷୀ କଲେ ଛଳେ ରେ (ସୁମନ) । ୧୫ ।

ଠାଉ ଠାଉ କଣ୍ଟା ମାରି ଝୁଙ୍କଣ ଦେଲେ ଡେ଼ର
ଝରି ଝରି ରକ୍ତ ଝରେ ରେ (ସୁମନ)
ଗଲା ତନୁ ସରି ରେ (ସୁମନ) । ୧୬ ।

ଲୁଚି ଲୁଚି ଦେଖୁଥିଲେ ବାନ୍ଧବ ସକଳ
କାନ୍ଦି କନ୍ଦାଇ ବିକଳ ରେ (ସୁମନ)
ଡରି ଅରି କୁଳ ରେ (ସୁମନ) । ୧୭ ।

ଶେଷେ ଶେଷ ହେଲା କଣ୍ଠ କରିଲେ ପ୍ରୟାଣ
ଘନ ଘୋର ମେଘାଚ୍ଛନ୍ନ ରେ (ସୁମନ)
ହୋଇଗଲା ଦିନ ରେ (ସୁମନ) । ୧୮ ।

କୁହାକୁହି କରି ମୃତେ ନେଲେ ଅପଘନ
ଧୀରେ ଧୀରେ କରି ଯତ୍ନ ରେ (ସୁମନ)
ସମାଧିଲେ ଭିନ୍ନ ରେ (ସୁମନ) । ୧୯ ।

ଜଗି ଜଗି ଥାଟେ ଭାଳୁଥିଲେ ତାଙ୍କ କଥା
ପଣ ପଣ ଫୋଡ଼ି ମଥା ରେ (ସୁମନ)
ପାଉଥିଲେ ବ୍ୟଥା ରେ (ସୁମନ) । ୧୦ ।

ଦେଖୁଁ ଦେଖୁଁ ତନ୍ତୁଁ ଉଦ ଭଜନ ଆସି ହେଲା
ମନେ ମନେ ଶଙ୍କୁ କଲା ରେ (ସୁମନ)
ମୋର ଶବ୍ଦ ମଲା ରେ (ସୁମନ) । ୨୧ ।

ସନ ସନ ସରଗରୁ ଦୂତେ ଖସି ଆସି
ଠେକ ଠେକ ନାନା ସ୍ୱର ରେ (ସୁମନ)
ଗାଇଲେ ପ୍ରଶଂସି ସେ (ସୁମନ) । ୨୨ ।

ଝୁଣ୍ଣୁ ଝୁଣ୍ଣୁ କରି ଝୁଣ୍ଣି ମାରଣାର କଳି
ଝିଲ ଝିଲ ରୂପେ ଝିଲି ରେ (ସୁମନ)
ଉଠିଲେ ଉଜ୍ଜ୍ୱଳି ରେ (ସୁମନ) । ୨୩ ।